## ଆବଶ୍ୟକ ସାମଗ୍ରୀ :

୧. ଗୋଟିଏ ବେଲୁନ (ମଝିମଝିଆ ଆକାର)
୨. କେତୋଟି ଖବରକାଗଜ ପୃଷ୍ଠା
୩. ଭେଲଭେଟ (ମଖମଲି) କାଗଜ ଏହିସବୁ ରଙ୍ଗରେ : ପାଟଳ, କଳା, ନୀଳ ଓ ହଳଦିଆ
୪. ଧଳା ଷ୍ଟର୍ଟ ପେପର
୫. ପାଟଳା ସୂତା
୬. ଫେଭିକଲ ଏମ୍ ଆର୍ ଆଢ଼େସିଭ



୧. ବେଲୁନକୁ ୩/୪ ଭାଗ ପବନ ପୁରେଇ ଫୁଲାଅ । ଫଳରେ ତାହା ନରମ ରହିବ । ପବନ ବାହାରି ନଯିବା ଭଳି ମୁହଁଟିକୁ ସୂତାରେ ଭଲକରି ବାନ୍ଧିଦିଅ । ଏହି ବନ୍ଧାଯାଇଥିବା ଅଂଶଟି ଲାଞ୍ଜ ହେବ ।



୨. ଖବରକାଗଜକୁ ୧"×୧" ବର୍ଗ ଆକାରରେ କାଟି ପାଣିରେ ୧୦-୧୫ ମିନିଟ ଭିଜେଇଦିଅ । ଏହି ଭିଜା କାଗଜଗୁଡ଼ିକୁ ବେଲୁନ ଉପରେ ଗୋଟିକ ଉପରେ ଆଉ ଗୋଟିଏ ସାମାନ୍ୟ ଚଢ଼େଇ ଲଗାଅ । ଏହି ଭଳି ସାରା ବେଲୁନକୁ କାଗଜ ଲଗେଇଦିଅ । ଗୋଟିଏ ପରସ୍ତ ଲଗେଇସାରିବା ପରେ, ପୁଣି ଏକ ପରସ୍ତ ଓ ତାପରେ ତୃତୀୟ ପରସ୍ତ କାଗଜ ଲଗାଅ ।



୩. ଏଥର ୧"×୧" ବର୍ଗ ଆକାରର କଟା ଖବରକାଗଜ ନେଇ ସବୁଥିରେ ଫେଭିକଲ ଏମ୍ ଆର ଆଢ଼େସିଭ ଲଗାଅ ଏବଂ ଗୋଟି ଗୋଟି କରି ପୁରା ବେଲୁନ ଉପରେ ଚପେଇଦିଅ । ଏହି ପ୍ରକାରେ ୪ ପରସ୍ତ କାଗଜ ଲଗେଇ ୮-୧୦ ଘଣ୍ଟା ରଖିଦିଅ ।



୪. ବେଲୁନ ଶୁଖିଯାଇ ଟାଣ ହୋଇଗଲେ ଛଣା ଫୋଡ଼ି ବେଲୁନ ଫୁଟେଇଦିଅ । ଏଣିକି କେବଳ ଖବରକାଗଜ'ର ଖୋଳ ମାତ୍ର ରହିବ । ଏହା ଉପରେ ଶେଷ ପରସ୍ତ ରୂପେ ୧"×୧" ବର୍ଗ ଆକାରରେ ପାଟଳ ବର୍ଣ ଭେଲ୍‌ଭେଟ (ମଖମଲି) କାଗଜ କାଟି, ସେଥିରେ ଫେଭିକଲ ଏମ୍ ଆର ଆଢ଼େସିଭ ଲଗେଇ ଚପାଅ ।



୫. ୧.୧/୨"×୩" ଆକାରର ୫ଟି ଷ୍ଟର୍ଟ ପେପର ଟୁକୁଡ଼ା ନେଇ, ସେଥିରେ ୫ଟି ନଳି ୧.୧/୨" ଉଚ୍ଚତାର ତିଆରି କର । ଏହିମାନଙ୍କ ଉପରେ କଳା ମଖମଲି କାଗଜ ଚପାଅ । ଏହି ନଳିରୁ ଚାରୋଟି, ବେଲୁନରେ ଗୋଡ ଭଳିଆ ଲଗାଅ । ପଞ୍ଚମଟିକୁ ବେଲୁନ'ର ନାକ ରୂପେ ଲଗାଅ । ନାକ ଉପରେ, କଳା ମଖମଲି କାଗଜ ଲଗିଥିବା ଗୋଲାକାର ଷ୍ଟର୍ଟ ପେପର ଚପେଇଦିଅ ।



୬. ଷ୍ଟର୍ଟ ପେପରରେ ଚଷମା ଆଉ କାନ ତିଆରି କର । କାନ ଉପରେ କଳା ମଖମଲି କାଗଜ ଆଉ ଚଷମା ଉପରେ ନୀଳ ମଖମଲି କାଗଜ ଲଗେଇ, ବେଲୁନ'ର ଯଥାସ୍ଥାନରେ କାନ ଓ ଚଷମା ଲଗାଅ । ହଳଦିଆ ମଖମଲି କାଗଜରେ ଆଖି ତିଆରି କର ଓ କଳା ମଖମଲି କାଗଜରେ ଆଖିପିତୁଳା ତିଆରି କର ।



୭. ୧"×୧.୧/୨" ଆକାରର ଦୁଇ ଖଣ୍ଡ ଷ୍ଟର୍ଟ ପେପର ନେଇ ତା' ଉପରେ ପାଟଳ ମଖମଲି କାଗଜ ଚପାଅ । ପିଗ୍‌ଗୀର ଦେହ ଦୁଇପଟେ ଏହାକୁ ଲଗେଇ ଦେଲେ ଏହା ଉତ୍ତମ ରଖିବା ପକେଟ'ର କାମଦେବ ।

ହୁଙ୍କ ! ହୁଙ୍କ ! ପୋର୍କୀ ଦ' ପିଗ୍ ଏବେ ପ୍ରସ୍ତୁତ ।
ତମ କଲମ, ପେନସିଲ ଏବେ ସିଏ ରଖିବ ନିରାପଦ ।







OBM-5803 ORI

ଆଖି ଫେରିଯାଏ ବାରବାର...
ଦେଖି ଚମକ ସୁପର ରିନ୍ ର !

सुपर
रिन
सफ़ेदी की चमकार

RIN

**ସୁପର ରିନ୍ ର ଶୁଭ୍ରତାର ଚମକ ଅନେକ ବେଶୀ**

ଅନ୍ୟ ଯେ କୌଣସି ଡିଟର୍ଜେଣ୍ଟ ଟେବଲେଟ କିମ୍ବା ବାର୍ ତୁଳନାରେ ଅଧିକ ଶୁଭ୍ର !

ହିନ୍ଦୁସ୍ଥାନ ଲିଭରଙ୍କ ଏକ ଉତ୍କୃଷ୍ଟ ଉତ୍ପାଦନ

# ...ନମ୍ବର ନଡ଼ିଆ ତେଲ ପାଇଁ
# ...ଅପେକ୍ଷା କରି ବସିଛନ୍ତି, କହିଲେ ?

ଅନ୍ୟାନ୍ୟ ସର୍ବତ୍ର ପାରାଶୁଟ ନଡ଼ିଆ ତେଲ ଯେ କେତେ ଜନପ୍ରିୟ
ହୋଇଛି ତାହା ଆପଣ ନିଶ୍ଚୟ ଶୁଣିଥିବେ ! ଏବେ ତାହା ଅବଶ୍ୟ
ଆପଣଙ୍କ ଦୁଆର ମୁହଁରେ ଆସି ପହଞ୍ଚିଲା —
ଖାଲି ଟିକିଏ ସମୟ ଲାଗିଲା !

ଆଧୁନିକ, ସୁବିଧାଜନକ ଏବଂ ସମ୍ପୂର୍ଣ୍ଣ ଖାଣ୍ଟି ଏହି ପାରାଶୁଟ
ନଡ଼ିଆ ତେଲ ଏଠାକୁ ଆଣିବାର କାରଣ
କ'ଣ ଜାଣନ୍ତି କି ! ଏହାର ପୁଷ୍ଟିକର ଗୁଣ — ଯାହା
ଆପଣଙ୍କ ସଘନ ଦୀର୍ଘ କୁନ୍ତଳ'ର ପ୍ରାପ୍ୟ !

# ପାରାଶୁଟ
## ନଡ଼ିଆ ତେଲ



ଶେଷକୁ ଶ୍ରେଷ୍ଠ ଜିନିଷଟି
ହିଁ ଆସି ପହଞ୍ଚିଲା !

PARACHUTE
COCONUT
OIL

AvenueBO 165 85



ଛୋଟିଆରୁ ଛୋଟିଆ ଘାଅରେ ବି ଧୂଳି ଲାଗିପାରେ, ଯଦ୍ୱାରା ଘାଆ ସଂକ୍ରମିତ ହୋଇପାରେ, ଅସୁବିଧା ଘଟିପାରେ ।

# ତୁରନ୍ତ, ବ୍ୟାଣ୍ଡ-ଏଡ୍ ଲଗାନ୍ତୁ




ବ୍ୟାଣ୍ଡ-ଏଡ୍
ସଂରକ୍ଷଣ ଉନ୍ନତତର । ଶୁଖାଏ ଦ୍ରୁତତର ।

Johnson & Johnson

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

ଭାରତର ପୌରାଣିକ ଚରିତ୍ର ଓ କାହାଣୀମାନ ଗଭୀର ତାତ୍ପର୍ଯ୍ୟପୂର୍ଣ୍ଣ । ଭାରତର ପରମ୍ପରା ବୁଝିବା ସକାଶେ ସେସବୁ ଜାଣିବା ଅତ୍ୟନ୍ତ ଆବଶ୍ୟକ । 'ଜହ୍ନମାମୁଁ' ନିୟମିତ ଭାବରେ ପୁରାଣ ଓ ପ୍ରାଚୀନ ସାହିତ୍ୟର ଚରିତ୍ରମାନ ପରିବେଷଣ କରିବ । ଏ ସଂଖ୍ୟାରେ ରହିଛି 'ଅଜାମିଳ'ର ଚରିତ୍ର ।

## ଅମରବାଣୀ

ବିକୃତିଂ ନୈବ ଗଚ୍ଛନ୍ତି ସଙ୍ଗଦୋଷେଣ ସାଧବଃ ।
ଆବେଷ୍ଟିତଂ ମହାସର୍ପୈଶ୍ଚନ୍ଦନଂ ନ ବିଷାୟତେ ॥

[ସୁଧୀ ଲୋକେ ଖରାପ ଲୋକଙ୍କ ସାଙ୍ଗରେ ରହିଲେ ବି ନିଜେ ଖରାପ ହେବେ ନାହିଁ । ଚନ୍ଦନ ବୃକ୍ଷ ସାପମାନଙ୍କ ଆଶ୍ରୟ ସ୍ଥଳ ହେଲେ ବି ନିଜେ ବିଷାକ୍ତ ହୁଏ ନାହିଁ ।]

ବର୍ଷ : ୧୯    ଅକ୍ଟୋବର ୧୯୮୫    ଅଙ୍କ : ୪

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



ଜା ଉପରେ ଆହୁରି ମଜା... ଗୋଲ୍ଡ ସ୍ପଟ'ର ମଜା!




ally flavoured. Contains no fruit juice or fruit pulp. **serve chilled**



ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



### ଚୋରର ଧରେଇଦେଲା ଶୁଆ

ସମସ୍ତେ ବାହାରକୁ ଯାଇଥିବା ବେଳେ ଘରେ ଚୋର ପଶି ସବୁ ନେଇଗଲେ । ହଠାତ୍ ଗୃହକର୍ତ୍ତୀ ଶୁଣିଲେ, ତାଙ୍କ ପୋଷା ଶୁଆ କହୁଛି, "ବେନ ! ଏଆଡ଼େ ଆ !" "ରବର୍ଟ ! ମୁଁ ହେଉଛି !" ଭଦ୍ର ମହିଳା ପୋଲିସକୁ ଜଣାଇଲେ । ନଥିପତ୍ରରେ ବେନ ଓ ରବର୍ଟ ନାମକ ଦୁଇ ଦସ୍ୟୁଙ୍କ ନାମ ଥିଲା । ସେମାନଙ୍କୁ ଧରିବାକୁ ହୃତ ସମ୍ପଦ ମିଳିଗଲା । ଚୋର ଦୁଇଜଣ ଘରେ କେହି ନଥିବାର ଦେଖି ପରସ୍ପର ଡକାଡକି ହେଉଥିଲେ ।

### ଅଦ୍ଭୁତ ଧାତୁ



ନିଉ ହ୍ୟାମସାୟାର୍‌ରେ ଅବସ୍ଥିତ ଗୋଟିଏ କୋମ୍ପାନି ଏକ ପ୍ରକାର ଧାତୁ ପ୍ରସ୍ତୁତ କରିଛନ୍ତି । ସବୁ ଦୃଷ୍ଟିରୁ ଏହା ଯେ କୌଣସି ଧାତୁଭଳି ଶକ୍ତ, କିନ୍ତୁ ପାଣିରେ ପକାଇଦେଲେ ଏ ଧାତୁ ପୁରାପୁରି ନିଶ୍ଚିହ୍ନ ହୋଇଯିବ ।



### ଜଳମଗ୍ନ ଦ୍ୱାରକା

ମହାଭାରତରୁ ଜଣାଯାଏ ଶ୍ରୀକୃଷ୍ଣଙ୍କ ପ୍ରତିଷ୍ଠିତ ଦ୍ୱାରକା ନଗରୀ ଶ୍ରୀକୃଷ୍ଣ ଦେହ ଛାଡିବା ପରେ ପରେ ସମୁଦ୍ରଗର୍ଭରେ ଲୀନ ଯାଇଥିଲା । ପ୍ରତ୍ନତତ୍ତ୍ୱ ବିଭାଗର ଗବେଷଣାରୁ ଜଣାଯାଇଛି ଯେ ଏହା ସତ୍ୟ । ଖ୍ରୀଷ୍ଟପୂର୍ବ ଦେଢ଼ ହଜାର ବର୍ଷ ତଳେ ଏ ନଗରୀ ଜଳମଗ୍ନ ହୋଇଛି ।

## ଜାଣନ୍ତି କି ?

୧. ଭୁବନେଶ୍ୱରରେ ମନ୍ଦିର ସଂଖ୍ୟା କେତେ ?

୨. କେଉଁ ମନ୍ଦିର ନିର୍ମାଣ ନିମନ୍ତେ ବାରଶହ ବଢ଼େଇ ବାରବର୍ଷ କାଳ କାମ କରିଥିଲେ ?

୩. ଓଡ଼ିଶାର କେଉଁଠାରେ ପ୍ରାଚୀନ ନାଳନ୍ଦା ଓ ତକ୍ଷଶୀଳା ଭଳି ବିରାଟ ବୌଦ୍ଧପୀଠ ଥିଲା ?

୪. ଓଡ଼ିଶାର କେଉଁଠାରେ ମହମ୍ମଦଙ୍କ ପବିତ୍ର ସ୍ମାରକୀ ରହିଛି ?

୫. ଭାରତର ବୃହତ୍ତମ ହ୍ରଦ କେଉଁଠି ?

(୬୪ ପୃଷ୍ଠାରେ ଉତ୍ତର ଦେଖନ୍ତୁ)

ପ୍ରାଚୀନ ସାହିତ୍ୟର ଚରିତ୍ର :

# ଅଜାମିଳ

ପ୍ରାଚୀନ କାଳରେ ବ୍ରାହ୍ମଣମାନଙ୍କୁ କଠୋର ନୀତି ନିୟମ ମାନି ଚଳିବାକୁ ପଡୁଥିଲା । କାନ୍ୟକୁବ୍ଜ ନଗରୀରେ ବାସ କରୁଥିବା ଅଜାମିଳ ବି ଜଣେ ନୈଷ୍ଠିକ ବ୍ରାହ୍ମଣ ଥିଲେ । କିନ୍ତୁ ଥରେ ତୀର୍ଥଯାତ୍ରାରେ ଯାଇ ସେ କେତେକ କୁସଙ୍ଗଙ୍କ ମେଳରେ ପଡିଲେ ।

ସେ ସେହି କୁସଙ୍ଗ ପ୍ରଭାବରେ ନିଜ ନୀତି ଧର୍ମ ଏପରିକି ପରିବାରକୁ ମଧ୍ୟ ଭୁଲି ଗଲେ । ମଦ ବିକ୍ରି କରୁଥିବା ଜଣେ ଯୁବତୀକୁ ସେ ବିବାହ କଲେ ।

ତାଙ୍କର ସନ୍ତାନବର୍ଗଙ୍କ ଭିତରୁ କନିଷ୍ଠ ନାରାୟଣକୁ ସେ ଅତ୍ୟନ୍ତ ସ୍ନେହ କରୁଥିଲେ ।

ଅଜାମିଳ ରୋଗରେ ଶଯ୍ୟାଶାୟୀ ହେଲେ । ଯେତେବେଳେ ମୃତ୍ୟୁକ୍ଷଣ ଉପସ୍ଥିତ ହେଲା, ସେତେବେଳେ ସେଠାରେ ଯମଦୂତମାନେ ଆସି ପହଞ୍ଚିଗଲେ । ଅଜାମିଳଙ୍କ ଆତ୍ମାକୁ ନର୍କକୁ ନେଇଯିବା ଥିଲା ସେମାନଙ୍କ ଯୋଜନା । "ନାରାୟଣ! ନାରାୟଣ!" ମୃତ୍ୟୁକ୍ଷଣ ଉପସ୍ଥିତ ଜାଣି ଅଜାମିଳ ସାନ ପୁଅକୁ ଆନ୍ତରିକ ଭାବରେ ଡାକି ପକାଇଲେ ।

ତତ୍କ୍ଷଣାତ୍ ସେଠାରେ ଆସି ପହଞ୍ଚିଗଲେ କେତେଜଣ ବିଷ୍ଣୁଦୂତ । ସେମାନେ ଅଜାମିଳଙ୍କ ଆତ୍ମାକୁ ବିଷ୍ଣୁଲୋକକୁ ନେଇଯିବାକୁ ଉତ୍ସୁକ ଥିଲେ । ଦୁଇ ଦୂତଦଳଙ୍କ ଭିତରେ ଯୁକ୍ତିତର୍କ ହେଲା । ଅଜାମିଳ ନର୍କକୁ ଯିବେ ନା ବିଷ୍ଣୁଲୋକକୁ ଯିବେ ?

ଅଚେତ ଅବସ୍ଥାରେ ଥାଇ ବୁଢା ଅଜାମିଳ ସେମାନଙ୍କ ଯୁକ୍ତିତର୍କ ଶୁଣିପାରୁଥାନ୍ତି । ନିଜେ ସତ୍ପଥରୁ ଓହରି ଆସି ଅନାଚାରୀ ଜୀବନ ଯାପନ କରିଥିବା ହେତୁ ସେ ଭୀଷଣ ଅନୁତାପ କଲେ । ସଙ୍ଗେ ସଙ୍ଗେ ଭଗବାନଙ୍କୁ ପ୍ରାର୍ଥନା ବି କରୁଥାନ୍ତି ।

"ବୋଧହୁଏ ଏ ଲୋକ ସତରେ ବିଷ୍ଣୁଭକ୍ତ । ଆମେ ଭୁଲ୍ ବଶତଃ ଏଠାକୁ ଆସିଛୁଁ ।" ଯମଦୂତମାନେ ଏହା କହି ଚାଲିଗଲେ । ଅଜାମିଳଙ୍କ ମୃତ୍ୟୁଯୋଗ ଗଡିଗଲା ପରେ ତାଙ୍କ ପାଇଁ ଏକ ନୂତନ ଜୀବନ ଆରମ୍ଭ ହେଲା । ସେ ଧର୍ମପ୍ରାଣ ଜୀବନ ଯାପନ କଲେ । ପରିଣତ ବୟସରେ ମୃତ୍ୟୁ ପରେ ସେ ବିଷ୍ଣୁଲୋକକୁ ଗଲେ ।






[ ୧୦ ]

[ ଆଗ୍ନେୟ ନଦୀ ପାରି ହୋଇ ଚନ୍ଦ୍ରବର୍ମା ବଣ ଭିତରେ ଦୁଇ ଅତିକାୟ ପକ୍ଷୀଙ୍କୁ ଦେଖିଲେ । ଅଗ୍ନିପକ୍ଷୀ ସେଠାରେ ପହଞ୍ଚି ସେ ଅତିକାୟ ପକ୍ଷୀ ଦୁହିଁଙ୍କୁ ଅନୁରୋଧ କଲା କି ସେମାନେ ଯେପରି କାପାଳିକଙ୍କୁ ଧରି ଆଣନ୍ତି । ତା'ହେଲେ ତା' ଖାଉନ୍ଦ ତାନ୍ତ୍ରିକ ଶଂଖ୍ ସେମାନଙ୍କୁ ପୁରସ୍କାର ଦେବ । ପକ୍ଷୀ ଦୁଇଟି ସେ ପ୍ରସ୍ତାବରେ ରାଜି ହେଲେ । ତା'ପରେ··· ]

ଅଗ୍ନିପକ୍ଷୀ ସହ ଦୁଇ ଅତିକାୟ ପକ୍ଷୀଙ୍କ କଥାବାର୍ତ୍ତା ଚନ୍ଦ୍ରବର୍ମା ମନ ଦେଇ ଶୁଣିଲେ । ତାଙ୍କ ମନକୁ ଗୋଟିଏ ନୂତନ କୌଶଳ ଆସିଗଲା । ତାନ୍ତ୍ରିକ ଶଂଖୁର ନିବାସ କାହିଁ କେତେ ଦୂରରେ । ଚାଲି ଚାଲି ସେ ପର୍ଯ୍ୟନ୍ତ ଯିବା ସହଜ ନୁହେଁ । ଏହି ଅତିକାୟ ପକ୍ଷୀଙ୍କ ଭିତରୁ ଗୋଟିକର ଡେଣା ଭିତରେ ଲୁଚି ଅକ୍ଲେଶରେ ସେଠାକୁ ଯାଇ ହେବ ।

ସେ ମନେ ମନେ କାଳନାଗକୁ ଧନ୍ୟବାଦ ଦେଲେ । କାଳନାଗର ସହାୟତାରେ ସେ ବଟନ ବୃକ୍ଷର ଫଳ ତୋଳି ଖାଇଥିଲେ ବୋଲି ସିନା ବର୍ତ୍ତମାନ ସବୁ ପଶୁପକ୍ଷୀଙ୍କ ଭାଷା ବୁଝିପାରୁଥିଲେ ! କେତେବେଳେ ସକାଳ ହେବ ଏବଂ ସେ ଅତିକାୟ ପକ୍ଷୀ ଉପରେ

ବସି ଅନେକ ଦୂର ଅତିକ୍ରମ କରିବେ, ଏହି ଆଗ୍ରହ ଓ ଉତ୍କଣ୍ଠାରେ ସେ ବସି ରହିଲେ ।

ସେ ଭାବିଲେ, କାପାଳିନୀକୁ ଧରିବା ନିମନ୍ତେ ତାନ୍ତ୍ରିକ ଶଂଖୁ ଯେଉଁ ପ୍ରକାର ଉଦ୍ୟମ କରୁଛି, ସେଥିରେ ସେ ସଫଳ ହେବ କି ? କାପାଳିନୀ ଏତେ ସହଜରେ ତା' ଶତ୍ରୁର ଆୟତ୍ତକୁ ଆସିଯିବ, ଏକଥା ସେ ବିଶ୍ୱାସ କରୁ ନଥିଲେ । ତାଙ୍କୁ ଧରି ଆଣିବାକୁ ଯାଉଥିବା ଅତିକାୟ ପକ୍ଷୀ ତା' ଅନୁଗତ କାଳନାଗର ଆହାର ବନିଯିବା ଅସମ୍ଭବ ନୁହେଁ ।

ଚନ୍ଦ୍ରବର୍ମା ଏହିସବୁ କଥା ଭାବୁଁ ଭାବୁଁ ସକାଳ ହୋଇ ଆସିଲା । ସୂର୍ଯ୍ୟକିରଣ ସ୍ପର୍ଶରେ ଅତିକାୟ ପକ୍ଷୀ ଦୁଇଟି ଡେଣା ଝାଡିଲେ ଓ ତା'ପରେ ଉଡ଼ିଗଲେ । ଗୋଟିକର ପକ୍ଷମାଳ ଭିତରେ ଲୁଚି ବସିଥିଲେ ଚନ୍ଦ୍ରବର୍ମା । ଦୁହେଁ ଉତ୍ତର ଦିଗକୁ ଯିବାର ଦେଖି ଚନ୍ଦ୍ରବର୍ମା ଖୁସି ହେଲେ । ସେମାନେ ନଦୀ ନାଳ ଅରଣ୍ୟ ପର୍ବତ ଅତିକ୍ରମ କରି ଚାଲିଲେ । ସେମାନଙ୍କ କଥାବାର୍ତ୍ତାରୁ ସେ ବୁଝୁଥିଲେ କି ସେମାନେ ତାନ୍ତ୍ରିକ ଶଂଖୁ ସହ ଦେଖା କରିବାକୁ ଯାଉଛନ୍ତି ।

ସେ ଯେ ସହଜରେ ଦୀର୍ଘ ପଥ ଅତିକ୍ରମ କରି ତାଙ୍କ ଗନ୍ତବ୍ୟ ସ୍ଥଳରେ ପହଞ୍ଚିବାକୁ ଯାଉଛନ୍ତି, ଏକଥା ଭାବି ସେ ଖୁସି ହେଲେ । ବର୍ତ୍ତମାନ କିପରି ଲକ୍ଷ୍ୟ ସାଧନ କରିବେ, ତାହାହିଁ ହେଲା ଚିନ୍ତା ।



ଚନ୍ଦ୍ରବର୍ମା ଯେଉଁ ପକ୍ଷୀଟି ଉପରେ ବସିଥିଲେ, ସେ ହଠାତ୍ ତଳକୁ ଝୁଙ୍କି ପଡି ଗୋଟିଏ ସରୋବର ଉପରକୁ ଆଖି ପକାଇ ଅନ୍ୟ ପକ୍ଷୀଟିକୁ କହିଲା, "ଏ ସରୋବରରେ କେମିତି ବଡ଼ ବଡ଼ କୁମ୍ଭୀର ଅଛନ୍ତି ଦେଖୁଛ ? ଏମାନେ ବଡ ସୁସ୍ୱାଦୁ । ଅନେକ ଦିନରୁ ଖାଇ ନାହିଁ ।"

ଚନ୍ଦ୍ରବର୍ମା ସେ ପକ୍ଷୀର ଏକଥା ଶୁଣି ଟିକିଏ ଶଙ୍କିଗଲେ । ପକ୍ଷୀଟି କୁମ୍ଭୀରକୁ ଖାଇବା ପାଇଁ ମନ ବଳାଇ ପାଣି ଭିତରକୁ ଝାମ୍ପ ଦେବନାହିଁ ତ ?

ତାଙ୍କର ମନେହେଲା, ତାଙ୍କ ଆଶଙ୍କା ସତ ହେବାକୁ ଯାଉଛି । କାରଣ ପକ୍ଷୀଟି ତଳକୁ ତଳକୁ ଅବତରଣ କରିବାକୁ ଲଗିଲା ।

"ତମେ ବର୍ତ୍ତମାନ ଆଉ କୁମ୍ଭୀର ପ୍ରତି ଦୃଷ୍ଟି ଦିଅନାହିଁ । ଉଡ଼ୁର ହୋଇଯିବ । ଅନ୍ୟ ପକ୍ଷୀଟି କହିଲା ।

କିନ୍ତୁ ପ୍ରଥମ ପକ୍ଷୀ ତା' କଥା ପ୍ରତି କର୍ଣ୍ଣପାତ କଲା ନାହିଁ । "ହେଇଟି ଗୋଟାଏ କୁମ୍ଭୀର ଉପରକୁ ଭାସି ଉଠିଲାଣି !"

ଏହା କହି ସେ ଅତିକାୟ ପକ୍ଷୀ ସରୋବରରେ ସନ୍ତରଣ କରୁଥିବା ଗୋଟିଏ କୁମ୍ଭୀରକୁ ଲକ୍ଷ୍ୟ କରି ଝାମ୍ପ ଦେଲା ।

ପକ୍ଷୀର ସେଭଳି ତୀବ୍ର ଗତି ଯୋଗୁଁ ଆରାମରେ ତା' ପକ୍ଷକୁ ଜାବୁଡ଼ି ଧରି ବସିଥିବା ଚନ୍ଦ୍ରବର୍ମା ହଠାତ୍ ତା' ପିଠିରୁ ଖସି ପଡ଼ିଲେ । ପକ୍ଷୀ ସେ ତା' ଉପରେ ସବାର୍ ହୋଇଥିବା କଥା ଯେମିତି ଜାଣି ନଥିଲା, ସେ ଖସି ପଡ଼ିବା






କଥା ବି ସେମିତି ଜାଣି ପାରିଲା ନାହିଁ । ପକ୍ଷୀର ଲକ୍ଷ୍ୟ ତଳେ ଭାସୁଥିବା କୁମ୍ଭୀର ଉପରେ ଥାଏ । ଚନ୍ଦ୍ରବର୍ମା ଜଳରେ ପଡ଼ିବା ବେଳେ ଦେଖିଲେ ଗୋଟାଏ ପ୍ରବଳ ଢେଉ ତାଙ୍କ ଆଡ଼କୁ ମାଡ଼ି ଆସୁଛି । ବାସ୍ତବରେ ସେ ଅତିକାୟ ପକ୍ଷୀର ଡେଣା ମାଡ଼ ଯୋଗୁଁ ସେ ଢେଉ ସୃଷ୍ଟି ହୋଇଥିଲା । କୁମ୍ଭୀରକୁ ଧରି ପକ୍ଷୀଟି ଉପରକୁ ଉଠିଗଲା । ପକ୍ଷୀର ଡେଣା ମାଡ଼ ଓ ସେ ଲହଡ଼ି କିଛି ସମୟ ସକାଶେ ଚନ୍ଦ୍ରବର୍ମାଙ୍କୁ ହତଚକିତ କରି ରଖିଲା ।

ଚନ୍ଦ୍ରବର୍ମା ପାଣିର କିଛି ତଳକୁ ଯାଇ ହାତ ପିଟି ପିଟି ଉପରକୁ ଉଠିଲେ ଓ ଚତୁର୍ଦ୍ଦିଗକୁ ଦୃଷ୍ଟିପାତ କଲେ । ସେ ଦେଖିଲେ, ଗୋଟ ବଡ଼ ଗୁଡ଼ାଏ କୁମ୍ଭୀର ଏଣେତେଣେ ପଳାଉଛନ୍ତି । ଅତିକାୟ ପକ୍ଷୀର ଆକ୍ରମଣ ଯୋଗୁଁ ଯେ ସେମାନେ ଛନାଆ ହୋଇ ପଳାଉଥିଲେ, ଏଥିରେ ତାଙ୍କର ସନ୍ଦେହ ନଥିଲା । ସେ ମନେ ମନେ ଆଶ୍ୱସ୍ତ ହେଲେ । ନହେଲେ ସେତେବେଳକୁ ସେ କୌଣସି ନା କୌଣସି କୁମ୍ଭୀର ହାବୁଡ଼ରେ ପଡ଼ିସାରନ୍ତେଣି ।

ଚନ୍ଦ୍ରବର୍ମା ଲକ୍ଷ୍ୟ କରି ଦେଖିଲେ, କୂଳ ବିଶେଷ ଦୂର ନୁହେଁ । କୂଳରେ ବହୁତ ଘନ ବଣ ବୁଦା । ସେ ଧୀରେ ଧୀରେ କୂଳ ଆଡ଼େ ସନ୍ତରଣ କରି ଅଗ୍ରସର ହେଲେ ।

କେଇ ମିନିଟ ପରେ ସେ ଥରେ ପଛଆଡ଼େ ଆଖି ପକାଇ ଦେଖନ୍ତି ତ ଗୋଟାଏ ବଡ଼ କୁମ୍ଭୀର ଆଁ କରି ତାଙ୍କ ଆଡ଼େ ମାଡ଼ି ଆସୁଛି । ଯଥା ଶୀଘ୍ର ସନ୍ତରଣ ନକରି ଧୀରେ ଧୀରେ କୂଳ ଆଡ଼େ ଅଗ୍ରସର ହେଉଥିବାରୁ ସେ ଅନୁତାପ କଲେ । ଏଣେ କୁମ୍ଭୀର ନିକଟବର୍ତ୍ତୀ ହୋଇ ଆସୁଥାଏ । ଭୟରେ ଚନ୍ଦ୍ରବର୍ମାଙ୍କ ଦେହ ଯେପରି ଅଚଳ ହୋଇଗଲା ! ତଥାପି ଗତିବେଗ ହ୍ରାସ ହେଲେ କଥା ସରିଲା । ଚନ୍ଦ୍ରବର୍ମା ନିଜ ଇଷ୍ଟ ଦେବତାଙ୍କୁ ସ୍ମରଣ କରି ପ୍ରାଣ ପଣେ ହାତ ଗୋଡ଼ ପିଟି କୂଳ ଆଡ଼େ ଗୃଲ୍‌ଲେ । କୁମ୍ଭୀର ବି ନିଜ ଗତି ବଢ଼ାଇ ଦେଲା । ତେବେ ଭାଗ୍ୟକୁ ସେ ପ୍ରତିଯୋଗୀତାରେ ଚନ୍ଦ୍ରବର୍ମାଙ୍କର ଜୟ ହେଲା । ସେ କୌଣସିମତେ କୂଳରେ ପହଞ୍ଚିଗଲେ ଓ




ଗୋଟାଏ ଗଛର ଡାଳ ଧରି କୂଳ ଭାଗକୁ ଉଠିଗଲେ। କୁମ୍ଭୀର ସେଠାରେ ପହଞ୍ଚିଯାଇ ଥରେ ମୁଣ୍ଡ ଟେକି ଦେଖିଲା ଓ ହତାଶ ହୋଇ ପୁଣି ବୁଡ଼ିପଡ଼ି ଜଳରାଶି ଭିତରେ ଅଦୃଶ୍ୟ ହୋଇଗଲା।

ଚନ୍ଦ୍ରବର୍ମା ଅତିଶୟ କ୍ଳାନ୍ତ ହେଲେ ବି କୂଳକୁ ଉଠିପଡ଼ି ପାଣିଠାରୁ ଯଥାଶୀଘ୍ର କିଛି ଦୂରକୁ ଚାଲିଗଲେ। ତାହା ବଣ ଏବଂ ମାରାତ୍ମକ ଜନ୍ତୁ ଜାନୁଆର୍ ଥାଇପାରନ୍ତି ବୋଲି ଭାବନା ଆସିବା ମାତ୍ରେ ନିଜ ତରବାରି କଥା ମନେ ପଡ଼ିଲା। ମୁହୂର୍ତ୍ତକ ପାଇଁ ଭୟ ହେଲା—ସେ ଅତିକାୟ ପକ୍ଷୀ ଉପରୁ ତଳକୁ ପଡ଼ିଲା ବେଳେ ତରବାରିଟି ଜଳରେ ଖସିପଡ଼ି ନାହିଁ ତ ?

ତରବାରି ଯଥା ସ୍ଥାନରେ ଥିବାର ଦେଖି ସେ ଆଶ୍ୱସ୍ତ ହେଲେ। ତରବାରିଟି ଖୋଲରୁ ବାହାର କରି ଖୋଲ ଭିତରେ ପଶିଥିବା ପାଣିତକ ନିଗାଡ଼ି ଦେଲେ ଓ ପୁଣି ତରବାରିକୁ ଖୋଲରେ ରଖିଲେ।

ସେ ମନେ ମନେ ନିଜକୁ କହିଲେ : "ଘଟଣାବଳିରୁ ଯାହା ମନେହୁଏ, ମୁଁ ବାସ୍ତବିକ ଭାଗ୍ୟବାନ। ଅନେକ ଦୂର ଦୁର୍ଗମ ପଥ ପକ୍ଷୀ ଉପରେ ବସି ଅକ୍ଳେଶରେ ଚାଲି ଆସିଲି। କୁମ୍ଭୀରର ଆହାର ବନିବାକୁ ଯାଉଥିଲି; ଦୈବକୁ ଖସି ଆସିଲି। ତରବାରିଟି ମଧ୍ୟ ଖସି ନଯାଇ ରହିଛି। ଏସବୁ ତ ଭଲ କଥା। କିନ୍ତୁ ବର୍ତ୍ତମାନ ମୁଁ କରିବି କ'ଣ ?"

ଏହିପରି ଚିନ୍ତା କରି ସେ ଅଗ୍ରସର ହେଉଥାନ୍ତି। ଦେଖିଲେ ବଣ ଗୋଟାଏ ସ୍ଥାନରେ ପତଳା ହୋଇ ଯାଇଛି। ଆଗରେ ଦେଖା ଯାଉଛି ଗୋଟିଏ ଅଦ୍ଭୁତ ଧରଣର ପାହାଡ଼। ତା'ର ଆକୃତି ଗୋଟାଏ ଲିଙ୍ଗ ପରି।

ସେ କିଛି ସମୟ ସେଆଡ଼େ ଏକ ଧ୍ୟାନରେ ଅନାଇ ରହିଲେ। ସେଭଳି ପାହାଡ଼ ସେ ଜୀବନରେ କେବେ ଦେଖିଥିଲେ ବୋଲି କାହିଁ ମନେ ପକାଇ ପାରିଲେ ନାହିଁ। ସେ ଶଂଖୁର ବାସସ୍ଥାନ ସମ୍ପର୍କରେ ଯାହା ଶୁଣିଥିଲେ, ସେଥିରୁ ତାଙ୍କର ମନେ ହେଲା, ସେଇ ସ୍ଥାନହିଁ ଶଂଖୁର ଘର।



ସେ ଅନେକ ସମୟ ପର୍ଯ୍ୟନ୍ତ ନୀରବ ନିଶ୍ଚଳ ଭାବରେ ଠିଆ ହୋଇ ସେ ପାହାଡ଼ ଆଡ଼େ ଅନାଇ ରହିଲେ । ସେହି ପାହାଡ଼ର ନିକଟକୁ ଯାଇ ଶଂଖୁର ନିବାସର ଅବସ୍ଥିତି ନିର୍ଣ୍ଣୟ କରିବାକୁ ପଡ଼ିବ । ପୁଣି କୌଣସି ମତେ ସେ ମହା ତାନ୍ତ୍ରିକର ଚକ୍ଷୁ ଏଡ଼ାଇ ତା'ର ମନ୍ତ୍ର ଶଂଖକୁ ହାତ କରିବାକୁ ପଡ଼ିବ । ଏହା କିଛି କମ୍ କଥା ନୁହେଁ । ସେଠାରେ ସିନା ସେ ସହଜରେ ପହଞ୍ଚିଗଲେ, କିନ୍ତୁ ବର୍ତ୍ତମାନ ଯେଉଁ କାମ୍ ବାକି ରହିଛି, ତାହା ଅତ୍ୟନ୍ତ କଠିନ ।

ସେ ଆହୁରି ମନେ ପକାଇଲେ : କାପାଳିନୀ କହିବା ଅନୁସାରେ ଶଂଖ ଗୋଟିଏ ନାଗର ଗୋଟିଏ କଣ୍ଠରେ ଅଟକି ଥିବା କଥା; ସେ ନାଗ ଖୁଣ୍ଟି ଦେହରେ ଲପଟି ରହିଥିବ । ତାହାଠୁଁ ଶଂଖ ଆଣି କାପାଳିନୀକୁ ଦେବା କଥା ! ଏତେ ବାଟ ଆସି ଏତକ କରି ନ ପାରିଲେ ସବୁ ବ୍ୟର୍ଥ ହେବ । ଅତ୍ୟନ୍ତ ସତର୍କ ଭାବରେ ବର୍ତ୍ତମାନ ଯାହା କରିବାର ତାହା କରିବାକୁ ହେବ ।

ଚନ୍ଦ୍ରବର୍ମା ସେହିପରି ଠିଆ ହୋଇ କେତେ କଥା ଭାବୁଥାନ୍ତି । ଜୀବନରେ କେତେବେଳେ କ'ଣ ହୋଇଯାଏ, ସେ କଥା ପୂର୍ବରୁ ନିରୂପଣ କରିବା ଅସମ୍ଭବ । ବେଶି ଦିନ ତଳର କଥା ନୁହେଁ । ନିଜ ରାଜ୍ୟରେ, ସୁରକ୍ଷିତ ପ୍ରାସାଦରେ ଭୋଗବିଳାସ ଭିତରେ ସେ ଜୀବନ ଯାପନ କରୁଥିଲେ । ସେ ଯୁଦ୍ଧ ବିଦ୍ୟା, ପର୍ବତାରୋହଣ, ସନ୍ତରଣ ଇତ୍ୟାଦି ଶିକ୍ଷା କରି ପ୍ରୟୋଜନ ବେଳେ ସବୁ ପ୍ରକାର କଷ୍ଟକୁ ସାମ୍ନା କରିବା ନିମନ୍ତେ ପ୍ରସ୍ତୁତ ହୋଇଥିଲେ ଠିକ୍, କିନ୍ତୁ ଏଭଳି କାଠିକର ପରୀକ୍ଷା ତାଙ୍କୁ ଏତେ ଶୀଘ୍ର ଦେବାକୁ ପଡ଼ିବ, ଏକଥା ସେ ସ୍ୱପ୍ନରେ ମଧ୍ୟ କଳ୍ପନା କରି ନ ଥିଲେ ।

ସେ ଯାହାହେଉ, ବର୍ତ୍ତମାନ ତାଙ୍କ ଆଗରେ ଆଶୁ ସମସ୍ୟା ହେଲା, ତାନ୍ତ୍ରିକ ଶଂଖୁ ପାଖରୁ କିପରି ତାଙ୍କ କାମ ହାସଲ କରିବେ ।

ସେ ଏହି ଚିନ୍ତାରେ ମଗ୍ନ ଅଛନ୍ତି, ହଠାତ୍ ଗୋଟାଏ ପ୍ରଚଣ୍ଡ ରଡ ତାଙ୍କ କାନରେ ପଡ଼ିଲା । ସତେ ଅବା କାନର ପର୍ଦ୍ଦା ଫାଟି ଯିବ ! ସେ

ଚମକି ପଡ଼ି ଏଣେ ତେଣେ ଅନାଇଲେ । ପୁଣି ସେହି ଏକା ପ୍ରକାର ରବ ଶୁଭିଲା । ସେ ରବ ତାଙ୍କର ପୂର୍ବ ଅପରିଚିତ ନଥିଲା । ସେ ପୂର୍ବଦିନ ଅଗ୍ନିପକ୍ଷୀ ଅବତରଣ କରିବା ପୂର୍ବରୁ ସେ ରଡ଼ି ଶୁଣିଥିଲେ । ଅଗ୍ନିପକ୍ଷୀ ଉପରକୁ ଉଠିବା ବେଳେ ବା ତଳେ ବସିବା ବେଳେ ଏହିପରି ରଡ଼ି କରିଥାଏ ବୋଲି ସେ ବୁଝିନେଲେ । ବର୍ତ୍ତମାନ ଅଗ୍ନିପକ୍ଷୀ ଆସି ଏଇଠି କେଉଁଠି ଓହ୍ଲାଇଛି ଅର୍ଥ ଶଂଖୁର ବାସସ୍ଥାନ ଖୁବ୍ ନିକଟରେ ।

ଚନ୍ଦ୍ରବର୍ମା କିଛି ସମୟ ପାଇଁ ଭୟଭୀତ ହେଲେ । ତା'ପରେ ତାଙ୍କର ମନେ ପଡ଼ିଲା କି ଅଗ୍ନିପକ୍ଷୀ ଦିନବେଳେ ଦେଖିପାରେ ନାହିଁ । ଅତଏବ ଭୟର କୌଣସି କାରଣ ନାହିଁ । କିନ୍ତୁ ଶଂଖୁର ଅନ୍ୟ ସେବକ ବି ତ ଥିବେ! ସେମାନଙ୍କ ଶକ୍ତି କେତେଦୂର?

ଚନ୍ଦ୍ରବର୍ମା ନିଜକୁ ବୁଝାଇଲେ : ବିପଦ ପ୍ରକୃତରେ ନ ଆସିବା ଯାଏ ବିପଦର ଆଶଙ୍କାରେ ବିବ୍ରତ ହେବାର କୌଣସି କାରଣ ନାହିଁ । ସେ ସାହସ ସଞ୍ଚୟ କଲେ ଓ ଯେ କୌଣସି ପରିସ୍ଥିତିର ସାମ୍ନା କରିବା ନିମନ୍ତେ ମନେ ମନେ ପ୍ରସ୍ତୁତ ରହିଲେ ।

ସେ କ୍ଷୁଧା ଅନୁଭବ କଲେ । ଆଖପାଖରେ ବହୁତ ଫଳ ଗଛ । ସେ କିଛି ସୁସ୍ୱାଦୁ ପିଜୁଳି ଓ ଆତଜାତୀୟ ଫଳ ତୋଳି ଖାଇଲେ । ପାଖରେ ଥିବା ଗୋଟିଏ ଝରଣାର ଶୀତଳ ପାଣି ପିଇଲେ । ଦେହରେ ନୂତନ ବଳର ସଞ୍ଚାର ହେଲା । ସେ ଗୋଟିଏ ଗଛ ଉପରକୁ



ଉଠି ଯାଇ ତା'ର ଘଞ୍ଚ ଡାଳ ଭିତରେ ଆତ୍ମଗୋପନ କରି ବସି ରହିଲେ । ରାତି ହେଲେ ଯାହା କିଛି କରିବାର କଥା ।

ବସି ବସି କେଉଁ ଦିଗରୁ ତାନ୍ତ୍ରିକ ଶଂଖୁର ପାହାଡ଼ ଆରୋହଣ କରିବେ, ସେକଥା ଚିନ୍ତା କରିବାକୁ ଲାଗିଲେ । ତେବେ ଅଧିକ ସମୟ ଚିନ୍ତା କରି ପାରିଲେ ନାହିଁ । କ୍ଳାନ୍ତି ଯୋଗୁଁ ନିଦ ଆସିଗଲା ।

ସୂର୍ଯ୍ୟାସ୍ତର ଅନେକ ଆଗରୁ ସେ ଅଞ୍ଚଳ ଅନ୍ଧକାର ହୋଇ ଆସିଲା । କାରଣ ସୂର୍ଯ୍ୟ ପଶ୍ଚିମ ଦିଗକୁ ଢଳିବା ପରେ ଗଛଲତା ଗହଳ ଦେଇ ସୂର୍ଯ୍ୟକିରଣ ସେଠାରୁ ଆସି ପାରିଲା ନାହିଁ । ଧିରେ ଧିରେ ସୂର୍ଯ୍ୟାସ୍ତ ହେଲା ଓ ସେ ବଣ ଅଞ୍ଚଳ ଆହୁରି ଅଧିକ ଅନ୍ଧକାରାଚ୍ଛନ୍ନ ହେଲା ।

ଯେତେବେଳେ ଚନ୍ଦ୍ରବର୍ମା ଆଖି ଖୋଲିଲେ, ସେତେବେଳକୁ ପ୍ରାୟ ମଧ୍ୟ ରାତ୍ର । ଚାରି ଦିଗ ନିସ୍ତବ୍ଧ । ପାଖ ଝରଣାର କଳକଳ ଧ୍ୱନି ମାତ୍ର ଶୁଭୁଥାଏ । ତା'ଛଡ଼ା ଶୁଭୁଥାଏ ପବନରେ ଶାଖା ପ୍ରଶାଖା ସବୁ ପରସ୍ପର ବାଡ଼େଇ ହେବାର ଶବ୍ଦ ।

ଚନ୍ଦ୍ରବର୍ମା କାମ ହାସଲ କରିବାର ଏହାହିଁ ପ୍ରକୃଷ୍ଟ ସମୟ ବୋଲି ବୁଝିଲେ । ସେ ଧିରେ ଧିରେ ଗଛରୁ ଅବତରଣ କଲେ ।

ଅଗ୍ନିପକ୍ଷୀକୁହିଁ ତାଙ୍କର ସବୁଠାରୁ ବେଶି ଭୟ ଥିଲା । ସେ ଅଗ୍ନିପକ୍ଷୀ କେଉଁଠି ଥିବ ତାହା ନିରୂପଣ କରିବା ନିମନ୍ତେ ଚେଷ୍ଟା କରୁଥିଲେ ଓ ମନ୍ଥର ଗତିରେ ସେ ପାହାଡ଼ ଆଡ଼େ ଯାଉଥିଲେ, ହଠାତ୍ ଶୁଣିଲେ ଗୋଟିଏ ମୃଦୁ ଆର୍ତ୍ତନାଦ: "ଚନ୍ଦ୍ରବର୍ମା !"

ତାଙ୍କ ବିସ୍ମୟର ସୀମା ରହିଲା ନାହିଁ । କାରଣ ସେ କଣ୍ଠସ୍ୱର କାପାଳିନୀର ଛଡ଼ା ଆଉ କାହାରି ହୋଇ ନ ପାରେ । ସେ ସ୍ତବ୍ଧ ହୋଇ ଠିଆ ହେଲେ । ପୁଣି ସେ ଶବ୍ଦ ଆସିବା ମାତ୍ରେ ସେ ଶବ୍ଦ ଅନୁସରଣ କରି କାପାଳିନୀ ଆଡ଼େ ଅଗ୍ରସର ହେଲେ ।                (କ୍ରମଶଃ)





# ରାଜା ଓ ଭୀଲ୍ କନ୍ୟା

ନିଶା ଗରଜୁଥାଏ । ତୁହାକୁ ତୁହା ଶୀତଳ ପବନ ସାଥିକୁ ବର୍ଷା ହେଉଥାଏ । ବଜ୍ରପାତଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ସେ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତୁମେ ଏ ଦୁର୍ଯୋଗପୂର୍ଣ୍ଣ ରାତିରେ ଯେଭଳି ପରିଶ୍ରମ କରୁଛ, ତା'ର ହେତୁ କ'ଣ? ନିଜର କଭଳି ସ୍ୱାର୍ଥ ଏଥିରେ ନାହିଁତ? ଥରେ

# ବେତାଳ କଥା



ଥରେ ବୁଦ୍ଧିମାନ ଲୋକେ ବି ସୁସ୍ପଷ୍ଟ ଉଦ୍ଦେଶ୍ୟ ନ ରଖି କାମ କରିବାର ଦେଖାଯାଇଥାଏ । ଗୋଟାଏ ଦୃଷ୍ଟାନ୍ତ ଦେଉଛି, ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଲା : କୃତବର୍ମା ଯେତେବେଳେ ସ୍ୱର୍ଣ୍ଣପୁରର ସିଂହାସନ ଆରୋହଣ କଲେ, ସେତେବେଳେ ସେ ଯୁବକ ।

ଦିନେ ଶୀକାର ଉଦ୍ଦେଶ୍ୟରେ ତରୁଣ ରାଜା କୃତବର୍ମା ବଣରେ ପ୍ରବେଶ କରି ବାଟବଣା ହୋଇ ଅନେକ ବୁଲିଲେ । ତାଙ୍କୁ ଭୀଷଣ ଶୋଷ କଲା । ସେ ହାଲିଆ ହୋଇ ଠାଏଁ ବସି ପଡ଼ିଲେ । ସେତିକିବେଳେ ସେ ପାଖଦେଇ ଗୋଟିଏ ଭିଲ୍ ତରୁଣୀ ଯାଉଥିଲା । ସେ ସୁନ୍ଦରୀ ତରୁଣୀ ଆଡ଼େ ମୁଗ୍ଧ ଦୃଷ୍ଟିରେ ଅନାଇ କୃତବର୍ମା କିଛି ସମୟ ନିମନ୍ତେ ନିଜ ଶୋଷ ଭୁଲିଗଲେ । ତା'ପରେ ସେ କହିଲେ, "ମୁଁ ବଡ଼ ତୃଷାର୍ତ୍ତ ।"

ତରୁଣୀ ଦଉଡ଼ି ଯାଇ ଖଣ୍ଡିଏ ପଦ୍ମପତ୍ରରେ ପାଣି ନେଇ ଆସିଲା । ସଙ୍ଗେ ସଙ୍ଗେ ତା' ବାପାଙ୍କୁ ବି ଡାକିଦେଲା । ତା' ବାପା ଆସି କୃତବର୍ମା ପାଖରେ ବସି ପଡ଼ି ପଚାରିଲେ, "ମୁଁ ଏ ବଣର ଭିଲ୍ ମାନଙ୍କ ଉପରେ ରଜା । ମନେହୁଏ ଆପଣ ଜଣେ ରାଜପୁରୁଷ ।"

"ଓଃ, ଆପଣ ତେବେ ଭିଲ୍ ରଜା ବୀରସିଂହ! ଆପଣଙ୍କ ନାମ ଶୁଣିଛି । ମୁଁ ରାଜା କୃତବର୍ମା!" ରାଜା କହିଲେ ।

ବୀରସିଂହ ଖୁସି ହୋଇ କୃତବର୍ମାଙ୍କୁ ନିଜ ଘରକୁ ନେଇଗଲେ । ସେଠାରେ କୃତବର୍ମା ତାଙ୍କୁ କହିଲେ, "ଆପଣଙ୍କ କନ୍ୟା ମୋର ବହୁତ ପସନ୍ଦ । ଆପଣଙ୍କ ଆପତ୍ତି ନଥିଲେ ମୁଁ ତାକୁ ବିବାହ କରିବି ।"

"ମହାରାଜ! ଆପଣଙ୍କ ପ୍ରସ୍ତାବରେ ମୁଁ ପ୍ରୀତ । ତେବେ, ମୋର ପୁଅ ସନ୍ତାନ ନାହିଁ । ମୋ କନ୍ୟାକୁ ଯିଏ ବିଭା ହେବ, ସେ ଭିଲ୍-ମାନଙ୍କ ରାଜା ହେବ । ଆପଣ କ'ଣ ରାଜ୍ୟ ଛାଡ଼ି ଏଠି ଆସି ରହିବେ ?"

ତରୁଣ ରାଜା ଖୁସି ହୋଇଯାଇ ଭିଲ୍ ରାଜାଙ୍କୁ କହିଲେ, "ପ୍ରସ୍ତାବ ଗ୍ରହଣ କଲି ।"

"ତେବେ ମଲ୍ଲଯୁଦ୍ଧର ଆୟୋଜନ କରୁଛି !"



"ସିଏ ପେର କ'ଣ ?" କୃତବର୍ମା ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲେ ।

"ଆମ ପ୍ରଥା ଅନୁସାରେ ଯେ କୌଣସି ଭିଲ୍ ଯୁବକ ମୋ କନ୍ୟାର ପାଣି ପ୍ରାର୍ଥୀ ହୋଇପାରେ । ସେସବୁ ପ୍ରାର୍ଥୀଙ୍କ ଭିତରେ ପ୍ରତିଯୋଗିତା ହେବ । ଯିଏ ସମସ୍ତଙ୍କୁ ମଲ୍ଲ-ଯୁଦ୍ଧରେ ହରାଇବ, ସିଏ କନ୍ୟାକୁ ବର ହେବ । ଅବଶ୍ୟ ଆପଣ କହିଲେ ମୁଁ ଏ ପ୍ରଥା ରଦ୍ଦ କରିଦେବି ।" ଭିଲ୍ ରାଜା କହିଲେ ।

"ନା, ନା, ରଦ୍ଦ କରିବା ଠିକ୍ ହେବ ନାହିଁ ।" ଭିଲ୍ କନ୍ୟା ଅନ୍ତରାଳରୁ କହିଲା ।

ରାଜା ମଲ୍ଲଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ଅନ୍ୟ ଆଶାୟୀ ଯୁବକମାନେ ବି ଆସିଗଲେ । ସେମାନଙ୍କୁ ଦୁଇଦଳରେ ବିଭକ୍ତ କରାଗଲା । ପ୍ରଥମ ଦଳ ଭିତରେ ପ୍ରତିଯୋଗିତାରେ ଯିଏ ସବୁଠାରୁ ବୀର ପ୍ରମାଣିତ ହେଲା, ସେ ଦ୍ୱିତୀୟ ଦଳର ସବୁଠାରୁ ବଡ଼ ବୀର ସହ ଲଢ଼ିଲା । ସେ ଦୁହିଙ୍କ ଭିତରେ ଯିଏ ବିଜୟୀ ହେଲା, ତା'ର ନାମ ଦୀପଚନ୍ଦ୍ର । ଅବଶେଷରେ ଦୀପଚନ୍ଦ୍ର ଓ କୃତବର୍ମାଙ୍କ ଭିତରେ ପ୍ରତିଯୋଗିତା ହେଲା । ଦୀପଚନ୍ଦ୍ର ହାତରେ ରାଜା ପରାଜିତ ହେଲେ ।

ସେଥିରେ ଭିଲ୍ ରାଜକନ୍ୟା ତାଳି ବଜାଇ ଆନନ୍ଦ ପ୍ରକାଶ କଲେ ଓ ଦୀପଚନ୍ଦ୍ରଙ୍କ ପାଖକୁ ଯାଇ ତାଙ୍କୁ ଅଭିନନ୍ଦନ ଜଣାଇଲେ ।

କିନ୍ତୁ ରାଜା ବଣରୁ ଚାଲିଯିବା ପୂର୍ବରୁ ପୁଣି ତାଙ୍କୁ ଭେଟି କନ୍ୟା କହିଲା, "ଆପଣ ତ ଇଚ୍ଛା କଲେ ଆପଣଙ୍କ ସୈନ୍ୟଦଳ ଧରି ଆସି ମୋତେ ନେଇଯାଇ ପାରିବେ !"

ରାଜା ମୁଣ୍ଡ ହଲାଇ ସମ୍ମତି ପ୍ରକାଶ କରି ଚାଲିଗଲେ । ସ୍ୱର୍ଣ୍ଣପୁରରେ ପହଞ୍ଚି ସେ ନିଜ ରାଜ୍ୟର ପ୍ରଧାନ ମଲ୍ଲଯୋଦ୍ଧାଠାରୁ ମଲ୍ଲ ଯୁଦ୍ଧ କୌଶଳ ଶିକ୍ଷା କଲେ । ମାସକ ଭିତରେ ସେ ସବୁ କଳା କୌଶଳ ଆୟତ୍ତ କଲେ ଓ ପୁଣି ବଣ ଭିତରକୁ ଆସି ଭିଲ୍ ରାଜାଙ୍କୁ ଭେଟି କହିଲେ, "ଆପଣ ପୁଣି ଥରେ ଦୀପଚନ୍ଦ୍ର ସହ ମୋର ପ୍ରତିଯୋଗିତାର ବ୍ୟବସ୍ଥା କରନ୍ତୁ ।"



ଭିଲ୍ ରାଜା ଖୁସି ହୋଇ ସେ ଆୟୋଜନ କଲେ । ପ୍ରତିଯୋଗିତାରେ ରାଜା କୃତବର୍ମା ଅକ୍ଳେଶରେ ଦୀପଚନ୍ଦ୍ରଙ୍କୁ ହରାଇ ଦେଲେ ।

ରାଜା ତା'ପରେ ଭିଲ୍ ରାଜକନ୍ୟାଙ୍କ ଆଡ଼େ ଅନାଇଲେ । କିନ୍ତୁ ସେ କନ୍ୟା ସେତେବେଳକୁ ନିଜ ଘର ଭିତରକୁ ଚାଲି ଯାଉଥିବାର ସେ ଦେଖିଲେ । ଏହାପରେ ରାଜା କୃତବର୍ମା ଭିଲ୍ ରାଜାଙ୍କ ପାଖକୁ ଯାଇ କହିଲେ, "ମହାଶୟ! ଆପଣ ଦୀପଚନ୍ଦ୍ର ସହିତ ଆପଣଙ୍କ କନ୍ୟାର ବିବାହ ଦିଅନ୍ତୁ । ମୁଁ ଆପଣଙ୍କର ଶୁଭେଚ୍ଛୁ ବନ୍ଧୁ ହୋଇ ରହିବି ।"

"ଏହା କିପରି କଥା? ଆପଣ ତ ମଲ୍ଲ ଯୁଦ୍ଧରେ ବିଜୟୀ ହେଲେ ।"

"ନା ବନ୍ଧୁ, ବର-ପରୀକ୍ଷା ପାଇଁ ମଲ୍ଲଯୁଦ୍ଧ ଥରେ ମାତ୍ର ହୁଏ । ସେଥର ମୁଁ ପରାଜିତ ହୋଇଥିଲି । ଏହା କହି ରାଜା ଚାଲିଗଲେ ।"

ବେତାଳ ଟିକିଏ ଚୁପ୍ ରହି ତା'ପରେ ମୁକାବିଲା କଲଭଳି କଣ୍ଠରେ ପ୍ରଶ୍ନ କଲା: "ରାଜା! ମୋର କେତେଗୁଡ଼ିଏ ସନ୍ଦେହ ରହିଛି । ରାଜା କୃତବର୍ମା କାହିଁକି ଜୟଲାଭ ସତ୍ତ୍ୱେ ବିଭା ହେବାକୁ ନାସ୍ତି କରିଦେଲେ? ଯଦି ବିଭା ନ ହେବା କଥା, ତେବେ ସେ ଏତେ କଷ୍ଟ କରି ମଲ୍ଲ ବିଦ୍ୟା ଆୟତ୍ତ କରି ଆସିଲେ କାହିଁକି? ଭିଲ୍ ରାଜକନ୍ୟା କୃତ-ବର୍ମାଙ୍କୁ ସସୈନ୍ୟ ଆସି ଜବର୍‌ଦସ୍ତ ତାଙ୍କୁ ନେଇଯିବା ପାଇଁ ପ୍ରସ୍ତାବ ଦେଇଥିଲେ । ରାଜା ତାହା ବା ନକଲେ କାହିଁକି? ରାଜା କୃତବର୍ମା ରାଜକନ୍ୟାଙ୍କ ସେ ପ୍ରେମ ପ୍ରତି ସମ୍ମାନ ନ ଦେଖାଇଲେ କାହିଁକି? ରାଜା! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ!"

ସର୍ତ୍ତ ଅନୁସାରେ ରାଜା ବିକ୍ରମାର୍କ ବେତାଳକୁ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇ ଦେବା ପର୍ଯ୍ୟନ୍ତ ମୌନ ରହିବା କଥା । କିନ୍ତୁ ବେତାଳର ପ୍ରଶ୍ନରେ ସେ ଥୟ ଧରି ନ ପାରି ଉତ୍ତର ଦେଲେ: "ରାଜା କୃତବର୍ମା ପ୍ରଥମ ଥର ମଲ୍ଲଯୁଦ୍ଧ ପରେ ରାଜକନ୍ୟାଙ୍କ ଦୀପଚନ୍ଦ୍ରଙ୍କ ପ୍ରତି ଅନୁକୂଳ ମନୋଭାବ ଦେଖି ବୁଝି ପାରିଥିଲେ

ସେ ରାଜକନ୍ୟା ଦୀପଚନ୍ଦ୍ରଙ୍କୁ ଭଲ ପା'ନ୍ତି । ତଥାପି ସେ ଦ୍ୱିତୀୟଥର ମଲ୍ଲଯୁଦ୍ଧ ପାଇଁ ଆଗଭର ହେଲେ ଦୁଇଟି କାରଣରୁ : ଭୀଲ୍ ରାଜକନ୍ୟାଙ୍କ ମନୋଭାବ ବିଷୟରେ ନିଶ୍ଚିତ ହେବାର ଉଦ୍ଦେଶ୍ୟ ପ୍ରଥମ କାରଣ । ଦ୍ୱିତୀୟ ଏବଂ ବଡ଼ କାରଣ ହେଲା, କୌଣସି ରାଜା ମଲ୍ଲ ଯୁଦ୍ଧରେ ପରାଜୟ ସ୍ୱୀକାର କରି ଚୁପ୍‌ଚାପ୍ ରହିଯାଇ ପାରେନା । ନିଜ ଆତ୍ମସମ୍ମାନ ଦୃଷ୍ଟିରୁ ସେ ମଲ୍ଲ ବିଦ୍ୟା ଶିଖି ପୁଣି ଆସିଥିଲେ । ତାଙ୍କ ବିଜୟ ପରେ ସେ ଯେତେବେଳେ ଦେଖିଲେ ଭୀଲ୍ ରାଜକନ୍ୟା ତାଙ୍କୁ ଅଭିନନ୍ଦନ ନ ଜଣାଇ ଚାଲିଗଲା, ସେ ତା' ମନୋଭାବ ସମ୍ପର୍କରେ ନିଶ୍ଚିତ ହୋଇଗଲେ । ନିଜ ବିଜୟ ଯୋଗୁଁ ତାଙ୍କ ଦ୍ୱିତୀୟ ଉଦ୍ଦେଶ୍ୟ ବି ଚରିତାର୍ଥ ହେଲା ।

"ଭୀଲ୍ ରାଜକନ୍ୟାଙ୍କ ପ୍ରକୃତ ମନକଥା ସେ ବୁଝି ପାରିଥିଲେ । ଯେତେବେଳେ ଭୀଲ୍ ରାଜା ମଲ୍ଲଯୁଦ୍ଧ ପ୍ରଥା ବନ୍ଦ କରିଦେବା କଥା ଉଠାଇଲେ, ସେତେବେଳେ ରାଜକନ୍ୟା ହିଁ ମନା କଲେ । ଅର୍ଥାତ୍ ରାଜକନ୍ୟା ନିଜ ପ୍ରେମିକ ଦୀପଚନ୍ଦ୍ରଙ୍କ ବୀରତ୍ୱର ପରିଚୟ ସର୍ବ ସମକ୍ଷରେ ଦେବାକୁ ଚାହୁଁଥିଲେ । ରାଜାଙ୍କ ସହ ଲଢ଼ି ସଫଳ ହେବାଠୁଁ ଗୌରବ ଆଉ କ'ଣ ଥାଇପାରେ? ସେ କୃତବର୍ମାଙ୍କୁ ସସୈନ୍ୟ ଆସିବାକୁ କହିଥିଲେ ଠିକ୍ । ସେ ଏଡ଼େ ମୂଲ୍ୟବାନ କନ୍ୟା ଯେ ତାଙ୍କୁ ପାଇବା ପାଇଁ ଜଣେ ରାଜା ଯୁଦ୍ଧ ଯାତ୍ରା କରିଛନ୍ତି, ଏହି ଗର୍ବ ଅର୍ଜନ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । ରାଜା କୃତବର୍ମା ଅତ୍ୟନ୍ତ ଧୀମାନ୍ ବୋଲି ରାଜକନ୍ୟାଙ୍କ ପ୍ରକୃତ ଉଦ୍ଦେଶ୍ୟ ଅନୁମାନ କରି ନେଇଥିଲେ ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସି ଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଯାଇ ଝୁଲି ପଡ଼ିଲା ।

(କଳ୍ପିତ)





# ଜଗୁବାବୁଙ୍କ ଚୋରଧରା

ଜଗୁବାବୁ ଥିଲେ ଜଣେ ଧନିକ ଲୋକ ।

ଏହା ଯେଉଁ ଯୁଗର କଥା, ସେତେବେଳେ ପଇସାର ମୂଲ୍ୟ ଆଜି ତୁଳନାରେ ବହୁତ ଅଧିକ ଥିଲା । ତେଣୁ ସେ ଯେ ଭନୁକୁ ମାସିକ ମାତ୍ର ଦୃଇଟଙ୍କା ଦରମାରେ ନିଜ ବଗିଚାରେ ମାଳି ନିଯୁକ୍ତ କଲେ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଭନୁ ଥିଲା ଅତ୍ୟନ୍ତ କୁଶଳୀ କର୍ମୀ । ସେ ମନ ପ୍ରାଣ ଢାଳି ବଗିଚା କାମରେ ଲାଗିଥାଏ । ତୁହୁଁ ତୁହୁଁ ଜଗୁବାବୁଙ୍କ ବଗିଚା ସେ ଅଞ୍ଚଳରେ ସବୁଠାରୁ ବଢ଼ିଆ ବଗିଚାରେ ପରିଣତ ହେଲା ।

ଯେଉଁମାନଙ୍କର ଫଳ ଫୁଲ ଗଛ ପ୍ରତି ଆଗ୍ରହ ଥିଲା, ସେମାନେ ଜଗୁବାବୁଙ୍କ ଉଦ୍ୟାନ ଦେଖିବାକୁ ଆସିଲେ । ଜଗୁବାବୁ ଫଳ ବିକି କରି ବେଶ୍ ଦୁଇ ପଇସା ଆୟ କଲେ ମଧ୍ୟ । ଲୋକେ ତାଙ୍କ ପ୍ରଶଂସା କଲେ, ଭନୁର ପରିଶ୍ରମ କଥା କେହି ମନେ ପକାଇଲେ ନାହିଁ କି ଜଗୁବାବୁ ମଧ୍ୟ ତାହା ମନେ ପକାଇ ଦେଲେ ନାହିଁ ।

"ବାବୁ ! ମୋ ଦରମା ଦୁଇଟଙ୍କା ବଢ଼ାଇ ଦିଅ !" ଦିନେ ଭନୁ ଅଳିକରି କହିଲା । ଭନୁ ଯେପରି ଭାବରେ କାମ କରୁଥିଲା, ଆଉ କେହି ହୋଇଥିଲେ ତା' ଦରମା ଆପଣାଛାଏଁ ଦୁଇଗୁଣ ବଢ଼ାଇ ଦେଇଥାନ୍ତା, ସେ ମୁହଁ ଖୋଲି କହିବା ଦରକାର ହୋଇ ନଥାନ୍ତା ।

କିନ୍ତୁ କଞ୍ଜୁସ ଜଗୁବାବୁ କହିଲେ, "ଆରେ, ତୋତେ ତ ମୁଁ ଦୁଇଟଙ୍କା ଦରମା ଦେବାରୁ ଲୋକେ କହୁଛନ୍ତି ମୁଁ ଗୁଡ଼ାଏ ବେଶି ଦେଲି ବୋଲି । ତୁ ପୁଣି ଦରମା ବଢ଼ାଇବାକୁ କହୁଛୁ କେମିତି ?"

ପଚାଶବର୍ଷ ତଳର 'ଚନ୍ଦାମାମ'ରୁ ଗୃହୀତ

"ଲୋକେ ମୋ କାମ କଥା ଜାଣି ନାହାନ୍ତି ବୋଲି କେହି କେବେ ସେମିତି କଥା କହି ଦେଉଥିବେ, ଆପଣ ବାବୁ ତ ଜାଣନ୍ତି, ମୁଁ ମନପ୍ରାଣ ଦେଇ ଆପଣଙ୍କ ବଗିଚାକୁ ଏପରି ସୁନ୍ଦର କରି ଗଢ଼ୁଛି । ଆପଣ ଅନ୍ୟ କଥା କାହିଁକି ଶୁଣିବେ? ଆପଣଙ୍କ ନିଜ ଆଖି ଯାହା କହିବ, ଆପଣ ତାହା କରନ୍ତୁ ।"

"ଆରେ ଭନୁ ପଇସା କ'ଣ ଏତେ ସହଜରେ ଆସେ ?"

ଭନୁ ଏହା ପରେ ବି ଦୁଇ ତିନିଥର ଦରମା ବଢ଼ାଇବା ପାଇଁ ଅନୁରୋଧ କଲା, କିନ୍ତୁ କିଛି ଫଳ ହେଲା ନାହିଁ ।

ଦେଖାଗଲା ବଗିଚାରୁ ନଡ଼ିଆ ଚୋରି ହେଉଛି । ଜଗୁବାବୁ ଭନୁକୁ ସେକଥା ପଚାରିବାରୁ ସେ କହିଲା, ତା' ଦରମା ଆଉ ଦୁଇଟଙ୍କା ବଢ଼ାଇ ଦେଲେ ସେ ରାତିରେ ବି ବଗିଚା ଜଗିବ ।

"ଆରେ ଯାଃ, ରାତିରେ କ'ଣ ମୁଁ ନିଜେ ଜଗି ପାରିବି ନାହିଁ ?" ଜଗୁବାବୁ ଶୁଣାଇ ଦେଲେ ।

ସେଦିନ ସଞ୍ଜବେଳେ ଜଗୁବାବୁ ଠାକୁରାଣୀ ମନ୍ଦିରକୁ ଯାଇ ପୂଜାରୀକୁ କହିଲେ, "ଠାକୁରାଣୀଙ୍କୁ କୁହ, ଯଦି ନଡ଼ିଆ-ଚୋର ମୋ ଆଖିରେ ପଡ଼ିବ, ତେବେ ମୁଁ ଗୋଟାଏ ବିଶେଷ ପୂଜା ଦେବି ।"

ସେ ଯିବା ପରେ ଭନୁ ଆସି ପୂଜାରୀକୁ କହିଲା, "ଠାକୁରାଣୀଙ୍କୁ କୁହ, ମୁଁ ସେମିତି ଧରା ନ ପଡ଼େଁ !"



ରାତିରେ ଜଗୁବାବୁ ବଗିଚ୍ଚା ଜଗିଲେ। ଭାନୁ ଚୋର ନଥିଲା, କିନ୍ତୁ ତାଙ୍କୁ ଶିକ୍ଷା ଦେବା ନିମନ୍ତେ ଗୋଟାଏ ନଡ଼ିଆ ଗଛ ଚଢ଼ି ନଡ଼ିଆଟାଏ ତୋଳି ଅନ୍ୟ ଗୋଟିଏ ନଡ଼ିଆ ଗଛ ତଳକୁ ଫୋପାଡ଼ି ଦେଲା। ସେମିତି ହେଲେ ଜଗୁବାବୁ ସେହି ନଡ଼ିଆ ଗଛରେ ଚୋର ଚଢ଼ୁଛି ବୋଲି ଭାବିବେ।

କିନ୍ତୁ ଜଗୁବାବୁ ଭାନୁକୁ ଚିହ୍ନି ନ ପାରିଲେ ମଧ୍ୟ ଜଣେ ଗଛ ଚଢୁଥିବାର ଦେଖିଥିଲେ। ସେ ଯାଇ ଠିକ୍ ଗଛ ପାଖରେ ପହଞ୍ଚିଗଲେ ଓ କହିଲେ, “ଚୋର! ଏଥର ତୁ ଯିବୁ କୁଆଡ଼େ? ମୋତେ ଧୋକା ଦେବା ପାଇଁ ଦୂରକୁ ନଡ଼ିଆ ଫୋପାଡ଼ୁଛୁ ପରା!”

ଭାନୁ ଗଛ ଉପରୁ ଅଳ୍ପ ଦୂରରେ ଥିବା କୂଅକୁ ଲକ୍ଷ୍ୟ କରି ଗୋଟାଏ ନଡ଼ିଆ ଫୋପାଡ଼ିଲା। ଅନ୍ଧାରରେ ଜଗୁବାବୁ ବୁଝି-ପାରିଲେ ନାହିଁ ଖୋଦ୍ ଚୋର କୂଅ ଭିତରକୁ ଡେଇଁଲା ନା କୂଅ ଭିତରେ ନଡ଼ିଆ ପଡ଼ିଲା। ସେ କୂଅ ପାଖକୁ ଦୌଡ଼ିଗଲେ ଓ ଦୁର୍ଭାଗ୍ୟକୁ ଯାଇ କୂଅ ଭିତରେ ପଡ଼ିଲେ। ଅବଶ୍ୟ ତାହା ଥିଲା ଅଗଭୀର କୂଅ।

ଭାନୁ ଗଛରୁ ଓହ୍ଲାଇ ଚାଲିଗଲା।

ପରଦିନ ଜଗୁବାବୁ ମନ୍ଦିରକୁ ଯାଇ ପୂଜାରୀଙ୍କୁ ସବୁ କଥା କହି ପଚାରିଲେ, “ଠାକୁରାଣୀ ତ କାହିଁ ମୋ ନିବେଦନ ଶୁଣିଲେ ନାହିଁ!”

“କେମିତି ଶୁଣିଲେ ନାହିଁ? ତମେ ତ ଚୋରକୁ ଦେଖିବା ସକାଶେ ଚାହିଁଥିଲ। ଦେଖିଲ ତ! କ’ଥା କ’ଣ କି, ଠାକୁରାଣୀ ତମକୁ ବିଶ୍ୱାସ କଲେ ନାହିଁ ବୋଧହୁଏ। ସେ ଭାବିଲେ ଯେଉଁ ଜଗୁ ଭାନୁ ଭଳି ବିଶ୍ୱସ୍ତ ମାଳୀକୁ ଦୁଇଟଙ୍କା ବେଶି ଦେଉ ନାହିଁ, ସେ ଜଗୁ ତାଙ୍କୁ କ’ଣ ପୂଜା ଦେବ?” ପୂଜାରି କହିଲେ।

ଜଗୁବାବୁ ଘରକୁ ଯାଇ ଭାନୁକୁ ଡକାଇ ପଠାଇଲେ ଓ ତା’ ଦରମା ବଢ଼ାଇ ଦେଲେ।






# ବୁଦ୍ଧିମତୀ ପତ୍ନୀ

ହରିପୁର ସହରରେ କେଶବ ଗୁପ୍ତ ନାମକ ଜଣେ ବ୍ୟବସାୟୀ ଥା'ନ୍ତି । ଥରେ ସେ ବହୁତ ଦିନ ଧରି ରୋଗରେ ପଡ଼ିଲେ । ବ୍ୟବସାୟ ଦେଖାଶୁଣା କରିବାକୁ କେହି ନ ଥା'ନ୍ତି । ଏଇ ସୁଯୋଗରେ କର୍ମଚାରୀମାନେ ନାନା ଉପାୟରେ ସବୁ ଟଙ୍କା ଆତ୍ମସାତ୍ କରି କାର୍ଯ୍ୟ ଛାଡ଼ି ଚାଲିଗଲେ । ତା'ପରେ ପତ୍ନୀଙ୍କର ଅଳଙ୍କାର ସବୁ ବିକ୍ରି କରି ବହୁତ ଦିନ ଧରି ଚିକିତ୍ସା ହେବା ପରେ ସେ ଭଲ ହେଲେ । କିନ୍ତୁ ସେ ସୁସ୍ଥ ହୋଇ ଉଠି ଦେଖନ୍ତି ତ ଘରେ କାଣୀ କଉଡ଼ିଟିଏ ସୁଦ୍ଧା ନାହିଁ ।

ସେ ଦୁଃଖିତ ହେଲେ ମଧ୍ୟ ହତାଶ ହେଲେ ନାହିଁ । ଭାବିଲେ ବନ୍ଧୁମାନଙ୍କଠାରୁ କିଛି ଟଙ୍କା କରଜ ଆଣି ବ୍ୟବସାୟ କରିବେ ଓ ପରେ ପୁଣି ଶୁଝି ଦେବେ । ପ୍ରଥମେ ସେ ବନ୍ଧୁ ଜଗତ ପାଖକୁ ଗଲେ । ନିଜର ଅଭାବ ଅସୁବିଧା କଥା କହି ଶହେ ଟଙ୍କା ଧାର ମାଗିଲେ ।

କିନ୍ତୁ ଜଗତ କହିଲେ, "ଦେଖ, ଭାଇ କେଶବ, ନଡ଼ିଆ ଗଛରୁ ନଡ଼ିଆ ତୋଳି ବେପାର କଲବାଲା ବ୍ୟକ୍ତି ଯଦି ନଡ଼ିଆ ଗଛରୁ ପଡ଼ି ହାତ ପାଦ ଭାଙ୍ଗି ଦିଏ ତେବେ ସେ ଆଉ ଜୀବନରେ ନଡ଼ିଆ ତୋଳିବାକୁ ଅନ୍ତତଃ ଚେଷ୍ଟା କରିବ ନାହିଁ ।"

କେଶବ ଗୁପ୍ତ ବନ୍ଧୁ ଜଗତଙ୍କର କଥାରେ ଥିବା ପ୍ରଚ୍ଛନ୍ନ ବ୍ୟଙ୍ଗ ବେଶ୍ ବୁଝିପାରିଲେ । ମନ ଭିତରେ ଖୁବ୍ ରାଗିଗଲେ ମଧ୍ୟ ବାହାରେ ଶାନ୍ତ ଭାବରେ କହିଲେ, "ଆରେ ଏପରି ଦୁର୍ଘଟଣା ହେଲେ ମଣିଷ ଯଦି ଡରି କାମ ନକରେ ତେବେ ତ ସେ ଭୀରୁ । ତେବେ ମୋର ଏମିତି କିଛି ହାତଗୋଡ଼ ଭାଙ୍ଗିବା ପରି ଅବସ୍ଥା ହୋଇ ନାହିଁ । ଭଗବାନ୍ କଲେ ପୁଣି

ସୁରେନ୍ଦ୍ର




ପୂର୍ବାବସ୍ଥା ଫେରି ଆସିବ ଓ ମୁଁ ତୁମ ଟଙ୍କା ଶୁଝି ଦେବି।"

କେଶବ ଗୁପ୍ତଙ୍କ କଥା ତାଙ୍କୁ ବିଶେଷ ଭଲ ଲାଗିଲା ନାହିଁ। ତେଣୁ ସେ କଥା ବାଆଁରେଇ କହିଲେ, "ଦେଖ ଭାଇ, ମୋର କ'ଣ ଟଙ୍କା ଥିଲେ ଆଉ ମୁଁ ଦିଅନ୍ତି ନାହିଁ? ମୋ ବ୍ୟବସାୟ କ୍ଷତିରେ ଚାଲିଛି। ତା'ପରେ ଅନେକ ଟଙ୍କା ଅଟକି ଯାଇଛି। ତେବେ ହଁ, ତୁମେ ଯେତେବେଳେ ବନ୍ଧୁ ବୋଲି ଏତେ ଆଶା କରି ଆସିଛ ମୁଁ ତୁମକୁ ରିକ୍ତ ହସ୍ତରେ ଫେରାଇ ଦେବି ନାହିଁ। ଏଇ ନିଅ ପାଞ୍ଚଟଙ୍କା, ଏଇଟା ଧାର ନୁହେଁ। ଫେରାଇବା ଦରକାର ନାହିଁ।"

ଏବେ କେଶବ ଗୁପ୍ତ ବୁଝିଲେ ବନ୍ଧୁଙ୍କର ମନୋଭାବ। ସେଠାରୁ ଫେରି ସେ ଅନ୍ୟ ତିନି ବନ୍ଧୁଙ୍କ ପାଖକୁ ଗଲେ। ସେମାନେ ମଧ୍ୟ ଠିକ୍ ଜଗତ ଯାହା କରିଥିଲେ ସେଇଆ କଲେ। ଅବଶେଷରେ କେଶବ ଗୁପ୍ତ କୋଡ଼ିଏଟି ଟଙ୍କା ଧରି ହତାଶ ହୋଇ ଘରକୁ ଫେରିଲେ। ସେ ବୁଝିପାରିଲେ ତାଙ୍କ ଦାରିଦ୍ର୍ୟ ଯୋଗୁ କେହି ଭରସି କରି ଏତେ ଟଙ୍କା ଦେବାକୁ ରାଜି ହେଉ ନାହାନ୍ତି।

ସେ ଘରକୁ ଫେରି ସ୍ତ୍ରୀ ସରଳାଙ୍କୁ ସବୁକଥା କହିଲେ। ସରଳା ହସି ହସି କହିଲେ, "ଏଥିରେ ତୁମେ ଏତେ ହତାଶ ହୋଇ ପଡ଼ୁଛ କାହିଁକି? ଏଡ଼େ ସହରରେ ତୁମେ ଜନ୍ମ ହୋଇ ଏଇଠି ମଣିଷ ହୋଇଛ, ତୁମର କ'ଣ ମାତ୍ର ଚାରୋଟି ବନ୍ଧୁ ଥିଲେ?"

"ନା, ନା, ଚାରୋଟି କାହିଁକି? ଅନେକ ବନ୍ଧୁ ଅଛନ୍ତି। କିନ୍ତୁ ଚାରିଜଣ ଧନୀବନ୍ଧୁ ଯଦି ଏପରି ବ୍ୟବହାର କଲେ ତେବେ ଅନ୍ୟମାନଙ୍କ ପାଖକୁ ମୁଁ କେଉଁ ସାହସରେ ଯିବି?" କେଶବ ଗୁପ୍ତ କହିଲେ।

ପତ୍ନୀ ସରଳା କହିଲେ, "ଏବେ ତୁମର ଏଇ ସହରରେ ଯେତେ ବନ୍ଧୁ ଅଛନ୍ତି ତାଙ୍କ ନାମ ଗୋଟିଏ କାଗଜରେ ଲେଖି ମୋତେ ଦିଅ।"

"ତଦ୍ୱାରା କ'ଣ ଲାଭ ହେବ?" କେଶବ ପଚାରିଲେ।

"ସେ କଥା ମୁଁ ବୁଝିବି ।" ସରଳା କହିଲେ ।

ତା'ପରେ କେଶବ ଗୁପ୍ତ ବସି ବସି ତାଲିକା କଲେ । ଦୀର୍ଘ ସମୟ କାଗଜ କଲମ ଧରି ବସିବା ଭିତରେ ଅନେକ ଦିନରୁ ସମ୍ପର୍କ ନଥିବା ଅନେକ ବନ୍ଧୁଙ୍କ ମୁହଁ ଆଖି ଆଗରେ ଭାସି ଉଠିଲା । କିଏ ହୁଏତ ପିଲାବେଳେ ଖେଳ ସାଥି ଥିଲା । ବିଦ୍ୟାଳୟରେ ଚାଳିଶ ପଚାଶ ଜଣିକ ସହପାଠୀ ମଧ୍ୟ ଥିଲେ । ସେମାନଙ୍କ ଭିତରୁ ଅଧାଅଧି ସହରରେହିଁ ରହୁଥିଲେ । କିଏ ବେପାର ବ୍ୟବସାୟ କରୁଥିଲା ତ କିଏ ବା ଚାକିରି କରୁଥିଲା । ଆହୁରି କେତେ ଲୋକଙ୍କ ସହ ବନ୍ଧୁତା ଥିଲା । କେତେକେ ଥିଲେ ବନ୍ଧୁବାନ୍ଧବ । ତାଲିକା ଲମ୍ବା ହୋଇ ଚାଲିଲା । ପ୍ରାୟ ଶହେ ନାମ ସେ ମନେ ପକାଇଲେ ।

ସକାଳୁ ସରଳା କାଗଜଟି ପୁଅ ଶାନ୍ତନୁକୁ ଦେଇ କହିଲେ, "ପୁଅ, ଏହି ତାଲିକାରେ ଥିବା ନାମ ଗୁଡ଼ିକ ତୋ ବାପାଙ୍କର ବନ୍ଧୁମାନଙ୍କର । ତୁ ପ୍ରତ୍ୟେକଙ୍କ ଘରକୁ ଯାଇ କହିବୁ କି ବାବା ଅସୁବିଧାରେ ପଡ଼ିଛନ୍ତି । ଶହେ ଟଙ୍କା କରଜ ଚାହୁଁଛନ୍ତି ।"

ପୁଅ ସକାଳୁ ଯାଇ ସନ୍ଧ୍ୟାରେ ଫେରିଲା । ସେ ବାପାଙ୍କର ପ୍ରତ୍ୟେକ ବନ୍ଧୁଙ୍କ ଘରକୁ ଯାଇଥିଲା । ସମସ୍ତେ ସେହିଦିନ ଅଳ୍ପ ଅଳ୍ପ ଟଙ୍କା ଦେଇଥା'ନ୍ତି । କିନ୍ତୁ ସମସ୍ତେ କହିଥା'ନ୍ତି ଟଙ୍କା ଫେରାଇବା ଦରକାର ନାହିଁ ।

କେଶବ ଗୁପ୍ତ ଏବେ ଗଣି ଦେଖିଲେ ସବୁ ମିଶି ଚାରିଶ ପଚାଶ ଟଙ୍କା । ସେ ମାତ୍ର ଶହେ ଟଙ୍କା କରଜ ଚାହିଁଥିଲେ । ପତ୍ନୀର ବୁଦ୍ଧି ଯୋଗୁ ଏତେ ଗୁଡ଼ିଏ ଟଙ୍କା ଖାଲି ଖାଲି ପାଇଲେ ।

ସେତିକ ଟଙ୍କା ନେଇ ସେ ଗୋଟିଏ ବ୍ୟବସାୟ ଆରମ୍ଭ କଲେ ଓ ବର୍ଷେ ଦୁଇବର୍ଷ ମଧ୍ୟରେ ପୂର୍ବ ଅବସ୍ଥା ପ୍ରାପ୍ତ ହେଲେ । ଏଣିକି ତାଙ୍କର ବିପଦ ବା ସମସ୍ୟା ପଡ଼ିଲେ ପତ୍ନୀ ସରଳାଙ୍କୁହିଁ ପ୍ରଥମେ ପଚାରନ୍ତି ସମାଧାନ କିପରି କରାଯିବ ।





# ବୈରାଗ୍ୟ

ଅନେକ ଦିନ ପୂର୍ବେ କାଶୀ ରାଜ୍ୟରେ ରାଜତ୍ୱ କରୁଥା'ନ୍ତି ରାଜା ବ୍ରହ୍ମଦତ୍ତ । ସେତେବେଳେ ବିଦେହ ରାଜ୍ୟର ରାଜଧାନୀ ମିଥିଳାରେ ରାଜତ୍ୱ କରୁଥା'ନ୍ତି ମହାଜନକ । ତାଙ୍କର ଥିଲେ ଦୁଇ ପୁତ୍ର ଅରିଷ୍ଟଜନକ ଓ ପୋଲଜନକ । ମହାଜନକଙ୍କର ମୃତ୍ୟୁ ପରେ ଅରିଷ୍ଟଜନକ ରାଜଗାଦିରେ ବସିଲେ ଓ ପୋଲଜନକ ହେଲେ ଯୁବରାଜ । କିନ୍ତୁ ପୋଲଜନକ ଷଡ଼ଯନ୍ତ୍ର କରି କିଛି ସୈନ୍ୟ ହାତରେ ରଖି ହଠାତ୍ ରାଜାଙ୍କୁ ଆକ୍ରମଣ କରି ହତ୍ୟା କଲେ ।

ଏକଥା ଶୁଣି ରାଣୀ ଭୟରେ କାତର ହୋଇ ପଡ଼ିଲେ ଓ ବୁଝିପାରିଲେ ନାହିଁ ସେ ଏହି ପରିସ୍ଥିତିରେ କିପରି ନିଜକୁ ରକ୍ଷା କରିବେ । କାରଣ ସେତେବେଳେ ସେ ଥିଲେ ଗର୍ଭବତୀ । ବହୁତ ଧୈର୍ଯ୍ୟର ସହିତ ନିଜର ଅଳଙ୍କାର ଓ କିଛି ଧନରତ୍ନ ଗୋଟିଏ ଟୋକେଇରେ ରଖି କିଛି ଡ଼ାଳପତ୍ର ଘୋଡ଼ାଇ ନିଜେ ମସିଆ କୋତରା ଲୁଗାଟିଏ ପିନ୍ଧି ରାଜ୍ୟ ଛାଡି ଚାଲିଗଲେ ।

ରାଜନଗର ବ୍ୟତୀତ ଏକା ସେ କେବେ ବାହାରକୁ ଆସି ନାହାନ୍ତି । ରାସ୍ତାରେ ଚାଲି ଚାଲି ସେ ଭାବୁଥା'ନ୍ତି କୁଆଡ଼େ ଯିବେ । ଆଗରୁ ଶୁଣିଥିଲେ ତାଙ୍କ ରାଜ୍ୟର ପଡ଼ୋଶୀ ରାଜ୍ୟର ନାମ ଚମ୍ପାନଗର । ସେ ବିଚାରି ଚାଲି ଚାଲି ଥକା ହୋଇ ବସି ପଡ଼ନ୍ତି ଓ ରାସ୍ତାରେ ଯାଉଥିବା ଲୋକଙ୍କୁ ପଚାରନ୍ତି, "ଚମ୍ପାନଗରକୁ ରାସ୍ତା କେହି କହିଦେବ କି ?" ଏମିତି ପଚାରୁ ପଚାରୁ ଜଣେ ଗାଡ଼ିବାଲା ବୁଢ଼ା ତାଙ୍କୁ ବହୁତ ଦୟା ଦେଖାଇ ଗାଡ଼ିରେ ବସାଇ ନେଇ ଚମ୍ପାନଗରରେ ଛାଡିଦେଲା । ସେଠାରେ ଗୋଟିଏ ମନ୍ଦିର ପାଖରେ

ଥିବା ବଡ଼ ଅତିଥିଶାଳା ନିକଟରେ ସେ ବସିଥା'ନ୍ତି ।

କିଛି ସମୟ ପରେ ଜଣେ ବ୍ରାହ୍ମଣ ପଣ୍ଡିତ ତାଙ୍କ ଶିଷ୍ୟମାନଙ୍କୁ ଧରି ସେଇବାଟେ ଯାଉଥିଲେ । ହଠାତ୍ ଏପରି ଅବସ୍ଥାରେ ଜଣେ ଗର୍ଭବତୀ ସ୍ତ୍ରୀ ବସିଥିବାର ଦେଖି ସେ ଆଶ୍ଚର୍ଯ୍ୟ ହେଲେ । ତାଙ୍କ ମନରେ ଦୟା ହେଲା । ସେ ଶିଷ୍ୟମାନଙ୍କୁ ରାସ୍ତାରେ ଅପେକ୍ଷା କରିବାକୁ କହି ଭିତରକୁ ଯାଇ ରାଣୀଙ୍କ ସହିତ କଥାବାର୍ତ୍ତା ହେଲେ ।

ରାଣୀଙ୍କର ତାଙ୍କ ଉପରେ ବିଶ୍ୱାସ ଆସିଗଲା । ସେ କହିଲେ, "ମହାନୁଭବ, ମୁଁ ମିଥିଳାର ରାଣୀ ଥିଲି । ମୋର ସ୍ୱାମୀଙ୍କୁ ତାଙ୍କ ସାନଭାଇ ହତ୍ୟା କରି ରାଜଗାଦି ନେଇଛି । ମୁଁ ପ୍ରାଣ ବିକଳରେ ପଳାଇ ଆସିଛି । କୌଣସି ମତେ ମୁଁ ମୋର ଗର୍ଭକୁ ରକ୍ଷା କରିବି । ଆପଣ ମୋତେ ସାହାଯ୍ୟ କରନ୍ତୁ ।" ଏହା କହି ସେ ବହୁତ କାନ୍ଦିଲେ ।

"ଆଚ୍ଛା ତମେ ମୋ ଘରେ ରହିପାର । କିନ୍ତୁ ତା' ପୂର୍ବରୁ ସମାଜ ପାଇଁ ଅନ୍ୟ କିଛି କହିବାକୁ ହେବ । ଯଦ୍ଦ୍ୱାରା ତୁମ ବିଷୟରେ ଅନ୍ୟ କେହି କିଛି ଜାଣି ପାରିବେ ନାହିଁ । ଜାଣିଲେ ପୁଣି ବିପଦ । ତେଣୁ ତମେ ମୋର ସାନ ଭଉଣୀ ବୋଲି କହିବ । ତା'ପରେ ଯାହା କହିବାର କଥା ମୁଁ କରିବି ।" ବ୍ରାହ୍ମଣ ପଣ୍ଡିତ କହିଲେ ।



ତା'ପରେ ରାଣୀ ବ୍ରାହ୍ମଣଙ୍କ କହିବା ଅନୁସାରେ ତାଙ୍କ ପାଦ ଧରି ଉଚ୍ଚ ସ୍ୱରରେ କାନ୍ଦିବାରୁ ଶିଷ୍ୟମାନେ ଭିତରକୁ ଆସି ପଚାରିଲେ, "ଗୁରୁଦେବ, ଏହାଙ୍କର କ'ଣ ହୋଇଛି ? କାହିଁକି ଏପରି କାନ୍ଦୁଛନ୍ତି ?"

ବ୍ରାହ୍ମଣ କହିଲେ, "ଇଏ ହେଉଛି ମୋର ସବା ସାନ ଭଉଣୀ । ମୁଁ ଗ୍ରାମ୍ ଛାଡ଼ି ଆସିବା ପରେ ଏହାର ଜନ୍ମ ହୋଇଛି । ଏତେଦିନ ମୁଁ ତାକୁ ଦେଖି ନଥିଲି । ଏବେ ଚିହ୍ନା ହେବାରୁ ସେ ଏତେ କାନ୍ଦୁଛି ।"

ବ୍ରାହ୍ମଣଙ୍କ କଥା ସମସ୍ତେ ବିଶ୍ୱାସ କଲେ । ସେ ରାଣୀଙ୍କୁ ତାଙ୍କ ଘରକୁ ନେଇଗଲେ । କିଛିଦିନ ପରେ ରାଣୀଙ୍କର ପୁଅଟିଏ ଜନ୍ମ

ହେଲା । ରାଣୀ ତାଙ୍କର ମୃତ ଶ୍ୱଶୁରଙ୍କ ନାମ ଅନୁସାରେ ପୁଅର ନାମ ରଖିଲେ ମହାଜନକ । ସେ ଥିଲେ ବୋଧିସତ୍ତ୍ୱ । ମହାଜନକ ଧୀରେ ଧୀରେ ବଢ଼ିବାକୁ ଲାଗିଲେ । ସେ କ୍ଷତ୍ରିୟ ପିଲମାନଙ୍କ ସହିତ ଖେଳୁଥା'ନ୍ତି । ଖଣ୍ଡାଖେଳ ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଶିଖିବା ସମୟରେ ସେ ସବୁଥିରେ ଭଲ କରୁଥା'ନ୍ତି । ଅନ୍ୟ ପିଲମାନେ ଖେଳରେ ହାରିଯାଇ ନିଜ ବାପ ମା'ଙ୍କ ପାଖରେ ମହାଜନକଙ୍କ ବିରୁଦ୍ଧରେ ଗୁହାରି କରନ୍ତି । ସେମାନେ ତାଙ୍କୁ ସବୁବେଳେ "ବିଧବାର ପୁଅ" ବୋଲି କୁହନ୍ତି । ଏସବୁ ଶୁଣି ଶୁଣି ସେ ଦିନେ ନିଜ ମା'ଙ୍କୁ ପଚାରିଲେ କାହିଁକି ସେମାନେ ଏପରି କହୁଛନ୍ତି । ତାଙ୍କ ମା' ତାଙ୍କୁ ସବୁକଥା ବୁଝାଇ କହିଲେ ।

ଯେତେବେଳେ ମହାଜନକ ଶୁଣିଲେ କି ତାଙ୍କର ଦାଦା ବାପାଙ୍କୁ ମାରି ଗାଦି ମାଡ଼ି ବସିଛନ୍ତି ଯାହାକି ରାଜପୁତ୍ର ହିସବରେ ତାଙ୍କର ପ୍ରାପ୍ୟ, ସେତେବେଳେ ସେ ରାଜ୍ୟ ଆକ୍ରମଣ କରି ଏହାର ପ୍ରତିଶୋଧ ନେବାକୁ ଚାହିଁଲେ ।

ତାଙ୍କୁ ଯେତେବେଳେ ଷୋଳବର୍ଷ ବୟସ ହେଲା ସେ ଏକ ଦଳ ବଛା ବଛା ସୈନ୍ୟ ସଂଗ୍ରହ କରିବା ପାଇଁ ଚାହିଁଲେ । ସେଥିପାଇଁ ଧନ ଦରକାର । ଇତିମଧ୍ୟରେ ସେ ତାଙ୍କର ବିଦ୍ୟା ଶିକ୍ଷା ସମାପ୍ତ କରିଥା'ନ୍ତି ଓ ଯୁଦ୍ଧ ବିଦ୍ୟାରେ ପାରଦର୍ଶିତା ଲାଭ କରିଥା'ନ୍ତି । ସେ ମା'ଙ୍କୁ ପଚାରିଲେ ଧନ ପାଇଁ କ'ଣ କରାଯିବ? ରାଣୀ ଆସିବା ବେଳେ ଯାହା ଧନରତ୍ନ ସାଙ୍ଗରେ ନେଇ ଆସିଥିଲେ ସେଥିରୁ



କିଛି ତାଙ୍କୁ ଦେଲେ । ସେ ସେସବୁ ନେଇ ସୈନ୍ୟ ଦଳ ଗଢ଼ି ଦିନେ ଶୁଭକ୍ଷଣରେ ରାଜ୍ୟ ଜୟ କରିବାକୁ ବାହାରିଲେ ।

ଯେତେବେଳେ ମହାଜନକ ମିଥିଳାରେ ପ୍ରବେଶ କଲେ ସେତେବେଳେହିଁ ପୋଲ୍-ଜନକଙ୍କର ମୃତ୍ୟୁ ହୋଇଗଲା । ତାଙ୍କର କୌଣସି ସନ୍ତାନ ନ ଥିଲା । ତେଣୁ ରାଜକର୍ମଚାରୀମାନେ ଗୋଟିଏ ରଥ ସଜାଇ ସେଥିରେ ରାଜଚିହ୍ନ ସ୍ୱରୂପ ମୁକୁଟ, ରାଜଛତ୍ର ଓ ରାଜଦଣ୍ଡ ପ୍ରଭୃତି ରଖି ରାସ୍ତାରେ ବୁଲାଇଲେ । ସେହି ରଥଟି ଯାଇ ମହାଜନକ ଥିବା ସ୍ଥାନରେ ପହଞ୍ଚି ବନ୍ଦ ହୋଇଗଲା । ରାଜପୁରୋହିତ ମହାଜନକଙ୍କୁ ଦେଖିବା ମାତ୍ରେ ତାଙ୍କର ରାଜଲକ୍ଷଣ ସବୁ ଚିହ୍ନିଲେ ଓ ତାଙ୍କୁ ରଥରେ ବସାଇ ରାଜପ୍ରାସାଦକୁ ନେଇ ଆସିଲେ । ରାଜପୁରୋହିତ ତାଙ୍କୁ ରାଜ୍ୟର ରାଜା ବୋଲି ଘୋଷିତ କଲେ ।

ତା’ପରେ ମହାଜନକଙ୍କର ମା’ଙ୍କୁ ରାଜପ୍ରାସାଦକୁ ଅଣାଗଲା ଓ ମହାସମାରୋହରେ ଅଭିଷେକ ଉତ୍ସବ କରାଗଲା । କିଛିଦିନ ପରେ ସେ ସୁବଳୀ ନାମକ ଏକ ରାଜକୁମାରୀଙ୍କୁ ବିବାହ କଲେ । ବର୍ଷକ ପରେ ତାଙ୍କର ପୁଅଟିଏ ହେଲା । ତା’ର ନାମ ସେମାନେ ରଖିଲେ ଦୀର୍ଘାୟୁ । ସମସ୍ତେ ଖୁସିରେ ଥା’ନ୍ତି । ମହାଜନକ ଅତ୍ୟନ୍ତ କୁଶଳତା ସହକାରେ ରାଜକାର୍ଯ୍ୟ ଚଳାଉଥା’ନ୍ତି ।

ଦିନେ ରାଜା ବନବିହାର ପାଇଁ ଇଚ୍ଛା ପ୍ରକାଶ କଲେ । ସମସ୍ତ ପ୍ରକାର ବ୍ୟବସ୍ଥା



କରାଗଲା । ଏକ ସୁସଜ୍ଜିତ ହାତୀ ଉପରେ ବସି ରାଜା ଯାଉଥା'ନ୍ତି । ଅନ୍ୟମାନେ କିଏ ଘୋଡ଼ାରେ କିଏ ବା ଚାଲି ଚାଲି ଯାଉଥା'ନ୍ତି । ଯାଉ ଯାଉ ହାତୀ ଏକ ଉଦ୍ୟାନରେ ପ୍ରବେଶ କଲା ।

ରାଜା ଦେଖିଲେ ସେଠାରେ ଦୁଇଟି ଆମ୍ବ ଗଛ ଅଛି । ଗୋଟିଏ ଗଛ ଫଳ ଭରରେ ଭରା ଅନ୍ୟଟି ଥୁଣ୍ଟା ଗଛ । ରାଜା ଫଳଥିବା ବୃକ୍ଷର ନିକଟକୁ ଯାଇ ଗୋଟିଏ ଆମ୍ବ ଛିଡ଼େଇ ଖାଇଲେ । ଆମ୍ବଟିର ସ୍ୱାଦ ଅତ୍ୟନ୍ତ ମଧୁର ଥିଲା । ରାଜା ଭାବିଲେ ଫେରିବା ସମୟରେ ସେ କିଛି ଆମ୍ବ ଏଠାରୁ ତୋଳି ନେଇ ଯିବେ ।

ରାଜା ଉଦ୍ୟାନ ଛାଡ଼ି ଆଗକୁ ଯିବା ମାତ୍ରେ ତାଙ୍କ ପଛରେ ଆସୁଥିବା କର୍ମଚାରୀ ଓ ପରିଜନମାନେ ଆମ୍ବ ଗଛରେ ଚଢ଼ି ଆମ୍ବ ସବୁ ତୋଳି ଖାଇଦେଲେ । ଅନେକ ଆମ୍ବ ତଳେ ପକାଇ ନଷ୍ଟ କଲେ । ଠିକଏ ଆଗରୁ ଅତ୍ୟନ୍ତ ସୁନ୍ଦର ଦେଖାଯାଉଥିବା ଗଛଟି ନଷ୍ଟ ବିନଷ୍ଟ ହୋଇଗଲା ।

ରାଜା ଶିକାର କରି ସନ୍ଧ୍ୟାବେଳକୁ ଫେରିବା ରାସ୍ତାରେ ଆମ୍ବ ଗଛର ଏ ଅବସ୍ଥା ଦେଖି ବହୁତ ଆଶ୍ଚର୍ଯ୍ୟ ହେଲେ । ଅନ୍ୟ ବୃକ୍ଷଟିର ଅବସ୍ଥା ପୂର୍ବପରି ରହିଛି । ଫଳ ନଥିଲେ ବି ଗଛଟି ଉପରେ କିଛି ଅତ୍ୟାଚାର ନ ହେବାରୁ ତାହା ପୂର୍ବପରି ସୁନ୍ଦର ଦିଶୁଛି ।

ଏହା ଦେଖି ତାଙ୍କ ହୃଦୟରେ ବୈରାଗ୍ୟର ଉଦୟ ହେଲା । ସେ ଚିନ୍ତା କରିବାକୁ ଲାଗିଲେ, "ଏହା ମୋତେ ଏକ ମହାନ୍ ଶିକ୍ଷା ଦେଇଛି । ରାଜ୍ୟର ସାରା ବିଭବ ଓ ଐଶ୍ୱର୍ଯ୍ୟ ଏହି ଫଳପୂର୍ଣ୍ଣ ବୃକ୍ଷ ପରି । ଆଉ ସନ୍ନ୍ୟାସ ହେଲା ଅନ୍ୟ ବୃକ୍ଷଟି ପରି । ସେଥିରେ ଫଳ ନାହିଁ, ତେଣୁ କେହି ମଧ୍ୟ ଆକ୍ରମଣ କରିବେ ନାହିଁ । ଏବେ ମୁଁ ମୋର ସାରା ଐଶ୍ୱର୍ଯ୍ୟକୁ ଛାଡ଼ି ସନ୍ନ୍ୟାସ ପଥ ଧରିବି ।"

(ଦ୍ୱିତୀୟାର୍ଦ୍ଧ ଆଗାମୀ ସଂଖ୍ୟାରେ)







# ବିପାଶା

ଏକଦା ଜଣେ ରାଜା ଥିଲେ । ନାମ କଲ୍ମାଷପାଦ । ଦିନେ ସେ ବଣ ଭିତର ଦେଇ ଗୋଟିଏ ସରୁ ରାସ୍ତାରେ ଯାଉଥିଲେ । ବିପରୀତ ଦିଗରୁ ଆସୁଥିଲେ ଶକ୍ତି ନାମକ ଜଣେ ଯୁବକ ଋଷି । ରାଜା କହିଲେ, "ବାଟ ଛାଡ଼ !"

ଶକ୍ତି ଥିଲେ ଜଣେ ତେଜସ୍ୱୀ ତପସ୍ୱୀ । ସେ କହିଲେ, "ସାଧୁ ସନ୍ଥଙ୍କ ପ୍ରତି ସମ୍ମାନ ଦେଖାଇବା ରାଜାର କର୍ତ୍ତବ୍ୟ । ତେଣୁ ତମେ ବରଂ ଟିକିଏ ହଟି ଯାଅ । ମୁଁ ଚାଲିଯାଏଁ ।" ଋଷିଙ୍କ କଥାରେ ରାଜା କଲ୍ମାଷପାଦ କ୍ରୁଦ୍ଧ ହୋଇ ଋଷିଙ୍କୁ ଚାବୁକରେ ପିଟିଦେଲେ ।





ଋଷି ଶକ୍ତି କିଛି ସମୟ ତଟସ୍ଥ ହୋଇ ରହି ତା'ପରେ ରାଜାଙ୍କୁ ଶାପ ଦେଲେ, "କଲ୍ମାଷପାଦ ! ତମେ ରାକ୍ଷସ ପ୍ରକୃତିର ବ୍ୟକ୍ତି । ରାଜା ହୋଇ ପ୍ରଜା ଶାସନ କରିବାର ଅଧିକାର ତମର ନାହିଁ । ତମେ ରାକ୍ଷସହିଁ ବନିଯାଅ !" ସଙ୍ଗେ ସଙ୍ଗେ ରାଜା ଗୋଟାଏ ରାକ୍ଷସରେ ପରିଣତ ହେଲେ ।



ସେ ଯୁବକ ଋଷି ଥିଲେ ମହର୍ଷି ବଶିଷ୍ଠଙ୍କ ଜ୍ୟେଷ୍ଠ ପୁତ୍ର । ଋଷି ବିଶ୍ୱାମିତ୍ର ବଶିଷ୍ଠଙ୍କର ଘୋର ଶତ୍ରୁ ଥିଲେ । ସେ ରାକ୍ଷସ ରୂପୀ କଲ୍ମାଷପାଦ ଦେହରେ ଗୋଟିଏ ଦୁଷ୍ଟ ପ୍ରେତ ପ୍ରବିଷ୍ଟ କରାଇ ଦେଲେ । ସେ ପ୍ରେତର ପ୍ରଭାବରେ ଦିନେ ରାକ୍ଷସ ଯାଇ ବଶିଷ୍ଠଙ୍କ ଆଶ୍ରମରେ ପଶି ଶକ୍ତିଙ୍କୁ ମାରିଦେଲା ।

ସେତିକରେ ତୃପ୍ତ ନ ହୋଇ ସେ ରାକ୍ଷସ ବଶିଷ୍ଠଙ୍କ ସମସ୍ତ ପୁତ୍ରଙ୍କୁ ହତ୍ୟା କଲା ଏବଂ ଆଶ୍ରମ ଜାଳି ଦେଲା । ସେତେ-ବେଳେ ମହର୍ଷି ବଶିଷ୍ଠ ଆଶ୍ରମରେ ନଥିଲେ । ଋଷିପୁତ୍ରମାନେ କେବେବି ଆକ୍ରମଣର ଆଶଙ୍କା କରୁ ନଥିଲେ; ତେଣୁ ସେମାନେ ଆତ୍ମ-ରକ୍ଷା କରି-ପାରିଲେ ନାହିଁ ।





ବଶିଷ୍ଠ ଆଶ୍ରମକୁ ଲେଉଟିବା ବେଳକୁ ସବୁ କିଛି ଶେଷ ହୋଇ ଗଲାଣି । ସେ ଦୁଃଖରେ ଅତ୍ୟନ୍ତ କାତର ହେଲେ । ସେ ଅବଶ୍ୟ ଯୋଗବଳରେ ଜାଣି ପାରିଲେ ସେ କାମ କିଏ କରିଛି । କିନ୍ତୁ ପ୍ରତିଶୋଧ ନେବା ଭଳି ସ୍ପୃହା ତାଙ୍କର ନ ଥିଲା ।

ସେ କାହାରି ଉପରେ ଦାଉ ନ ସାଧି କ୍ଷୋଭ ଭରେ ନିଜେ ପ୍ରାଣ ତ୍ୟାଗ କରିବାକୁ ନିଷ୍ପତ୍ତି କଲେ । ସେ ଗୋଟିଏ ପର୍ବତ ଉପରକୁ ଚଢ଼ିଗଲେ ଏବଂ ତଳେ ପ୍ରବହମାନ ନଦୀ ଗର୍ଭକୁ ଲଂଫ ଦେଲେ । ପ୍ରାଣ ତ୍ୟାଗର ଏହି ପନ୍ଥା ସେ ବାଛି ନେଇଥିଲେ ।





କିନ୍ତୁ ସେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ହଠାତ୍ ନଦୀରୁ ସମସ୍ତ ଜଳ ଅପସରି ଯାଇଛି । ସେ ବାଲୁକା ରାଶି ଉପରେ ଠିଆ ହୋଇଛନ୍ତି । କରୁଣାମୟୀ ନଦୀ ତାଙ୍କ ପ୍ରତି ବାତ୍ସଲ୍ୟଭାବ ଯୋଗୁଁ ତାଙ୍କୁ ବଞ୍ଚାଇବା ସକାଶେ ଏପରି କରିଥିଲେ ବୋଲି ସେ ବୁଝିଲେ ।

ତଥାପି ବଶିଷ୍ଠ ପ୍ରାଣ ତ୍ୟାଗ କରିବାର ସଂକଳ୍ପ ଛାଡ଼ିଲେ ନାହିଁ । ସେ ନଦୀ ତୀର ଦେଇ ଚାଲି ଚାଲି ଯାଇ ପାଣି ଯେଉଁଠି ଗଭୀର ବୋଲି ଜାଣିଲେ, ସେଇଠି ଠିଆ ହେଲେ । ତା'ପରେ ନିଜ ହାତ ଦୁଇଟି ସେ ପାଶବଦ୍ଧ କଲେ । ତା'ହେଲେ ବୁଡ଼ିବା ବେଳେ ସନ୍ତରଣ କରିପାରିବେ ନାହିଁ ।





ଏହାପରେ ବଶିଷ୍ଠ ସେ ଗଙ୍ଗର ପାଣି ଭିତରକୁ ଡେଇଁ ପଡ଼ିଲେ । କିନ୍ତୁ ସଙ୍ଗେ ସଙ୍ଗେ ସେ ନିଜକୁ ପାଶମୁକ୍ତ ଭାବରେ ଦେଖିଲେ । ମାତୃ-ହୃଦୟା ନଦୀ ତାଙ୍କ ପାଶ ମୁକୁଳାଇ ଦେଇଥିଲେ । ଶୀତଳ ନୀରରେ ତାଙ୍କ ଅବସାଦ ଦୂର କରିଦେଇଥିଲେ । ମନରୁ ଶୋକ ମଧ୍ୟ ଦୂର ହୋଇଥିଲା ।

ବଶିଷ୍ଠ ସେତିକିବେଳେ ଦେଖିଲେ କୂଳରେ ଠିଆ ହୋଇ ତାଙ୍କ ପୁତ୍ରବଧୂ ଅଶ୍ରୁପାତ କରୁଛନ୍ତି । ସେ ଶକ୍ତିଙ୍କ ସ୍ତ୍ରୀ । ସେ ଗର୍ଭବତୀ ଥିଲେ । ବଶିଷ୍ଠଙ୍କର ଭତ୍ତିମାନ ମନେହେଲା, ଆଗତପ୍ରାୟ ବଂଶଧରର ସୁରକ୍ଷା ନିମନ୍ତେ ତାଙ୍କୁ ବଞ୍ଚି ରହିବାକୁ ପଡ଼ିବ ।






ବଶିଷ୍ଠ ନଦୀ ତୀରରେ ବସି ନଦୀଙ୍କୁ ପ୍ରଣାମ କଲେ । ବଶିଷ୍ଠଙ୍କୁ ପାଶମୁକ୍ତ କରିଥିବା ହେତୁ ଋଷିଗଣ ସେ ନଦୀର ନାମ ଦେଲେ ବିପାଶା । ଆଜିବି ବିପାଶାରେ ସ୍ନାନ କରିବା ଭକ୍ତମାନେ ସୌଭାଗ୍ୟର କଥା ବୋଲି ମନେ କରନ୍ତି ।



# ନୂତନ ନୀତି!

ସୁଭଦ୍ର ରାଜ୍ୟର ରାଜା ବୀରଭଦ୍ରଙ୍କର ହଠାତ୍ ପରଲୋକ ହୋଇଗଲା । ସେତେବେଳେ ତାଙ୍କର ବିଚକ୍ଷଣ ମନ୍ତ୍ରୀ ତୀର୍ଥଯାତ୍ରାରେ ଯାଇଥାନ୍ତି । ସେ କେଉଁ ତୀର୍ଥରେ ଅଛନ୍ତି, ସେକଥା ଜାଣିବାର ଉପାୟ ନଥିଲା । ବିଧି ଅନୁସାରେ ରାଜାଙ୍କର ତରୁଣ ପୁତ୍ର ଜୟବର୍ମା ସିଂହାସନ ଆରୋହଣ କଲେ ।

ଜୟବର୍ମା ସେଯାଏ ଖେଳଖେଳି ମଉଜ ମଜ୍‌ଲିସ୍‌ରେ ସମୟ କାଟୁଥିଲେ । ତାଙ୍କୁ ରାଜ୍ୟ ପରିଚାଳନା ବିଷୟରେ କିଛି ଜଣା ନଥିଲା । ହଠାତ୍ ଏପରି ଭାବରେ ପରିସ୍ଥିତି ବଦଳିଯିବ ଏବଂ ତାଙ୍କୁ ଶାସନ ଅଧିକାର ମିଳିବ, ଏକଥା ସେ କଳ୍ପନା କରି ନଥିଲେ । ନିଜ ବୁଦ୍ଧି ଓ ପାରିବାପଣ ଉପରେ ତାଙ୍କର ଖୁବ୍ ବିଶ୍ୱାସ ଥିଲା । ଭାବିଲେ ରାଜା ହୋଇ ସେ ଅନେକ ନୂଆ କଥା କରି ଦେଖାଇ ଦେବେ ।

ଦିନେ ଜୟବର୍ମା ଗାଡ଼ିରେ ରାଜପଥ ଦେଇ ଯାଉଛନ୍ତି, ଜଣେ ଗୃହସ୍ଥ ଗୋଟିଏ ପିଲାକୁ କିଛି କହୁଥିବାର ତାଙ୍କ କାନରେ ପଡ଼ିଲା । ଗୃହସ୍ଥ କହୁଥିଲା : "ମୂର୍ଖ! ତୋତେ ଗୁରୁକୁଳକୁ ପଠାଇ ମୁଁ ବଡ଼ ଭୁଲ କରିଛି । ଖାଲି ବସି ବହି ପଢୁଥିବୁ! କୌଣସି ବାସ୍ତବ ଜ୍ଞାନ ନାହିଁ । ପାଠ ପଢ଼ିବା ଅର୍ଥ ଅଳସୁଆ ବନିଯିବା, ଆଉ କିଛି ନୁହେଁ । କାହିଁକି ଗୁଡ଼ାଏ ଅକର୍ମା ଶିକ୍ଷକ ଗୁରୁକୁଳ ଖୋଲି ବସିଛନ୍ତି କେଜାଣି !"

ପିଲାଟି ସେ ବଡ଼ ମଣିଷର କଥାରେ କର୍ଣ୍ଣପାତ ନ କରି ବହି ଧରି ବସିଥାଏ ।

ରାଜା ଚାଲିଗଲେ । ପରଦିନ ସକାଳେ ରାଜ୍ୟ ସାରା ରାଜାଙ୍କ ହୁକୁମ୍ ଜାରି ହେଲା: ସବୁ ଗୁରୁକୁଳ ସଙ୍ଗେ ସଙ୍ଗେ ବନ୍ଦ!

ରାଜା ଦରବାରରେ କହିଲେ, "ଗୁରୁକୁଳ ଗୁଡ଼ିକ ଖାଲି ଅଳସୁଆ ସୃଷ୍ଟି କରୁଛନ୍ତି ।"



ସଙ୍ଗେ ସଙ୍ଗେ ଦୁଇଜଣ ଖୋସାମୋଦିଆ କହିଲେ, "ମଣିମା ଗୁରୁକୁଳ ଗୁଡ଼ିକ ବନ୍ଦ କରି ଦେଇ ରାଜ୍ୟକୁ ଅଳସୁଆଙ୍କ ଦୌରାତ୍ମ୍ୟରୁ ରକ୍ଷା କରିଦେଲେ । ବାହା ବାଃ !"

କେଇଦିନ ପରେ, ଦିନେ ରାଜା ଦରବାରରେ ବସିଛନ୍ତି, ଜଣେ ଜଣାଶୁଣା ବ୍ୟବସାୟୀ ଆସି ଗୁହାରି କଲା, "ମହାରାଜ! ମୋ ଘରେ ଚୋର ପଶି ମୋର ଲକ୍ଷାଧିକ ଟଙ୍କାର ସମ୍ପତ୍ତି ନେଇଗଲେ । ମୁଁ କଟୁଆଳଙ୍କୁ ଡାକି ନେଇ ଯାଇ ଚୋରି କିପରି ଘରରେ ହୋଇଛି ସବୁ ଦେଖାଇ ଦେଲି । ସେ କହିଲେ କି ଦୁଇଦିନ ଭିତରେ ଚୋର ଧରା ହେବ । ଦୁଇମାସ ବିତିଗଲାଣି । କଟୁଆଳ କିଛି କରି ପାରିଲେ ନାହିଁ । ମଣିମା କାହିଁକି ଏ କଟୁଆଳ ଓ ସିପାହିମାନଙ୍କୁ ମୋଟା ଦରମା ଦେଇ ପାଳୁଛନ୍ତି? ଏଗୁଡ଼ାକ କିଛି କାମର ନୁହନ୍ତି ।"

ବ୍ୟବସାୟୀ ଚାଲିଯିବା ପରେ ରାଜା ଗମ୍ଭୀର ଭାବରେ କହିଲେ, "ବାସ୍ତବିକ, ଏ କଟୁଆଳ ଓ ସିପାହି ସମ୍ପ୍ରଦାୟ ପୋଷଣ କରି ଲାଭ କ'ଣ ?"

"କିଛି ନାହିଁ ଆଜ୍ଞା!" ଜଣେ ଦୁଇଜଣ କହିଲେ ।

ବାସ୍! ପରଦିନରୁ ରାଜ୍ୟର ଶୃଙ୍ଖଳା ରକ୍ଷା ବାହିନୀ ଭାଙ୍ଗି ଦିଆଗଲା ।

"ମହାରାଜ! ଲାଭ କଥା କହିଲେ ଆମ୍ଭର ଗୋଟିଏ ବିଭାଗ ବି ପୂରା ଭାଙ୍ଗି ଦେବା ଆବଶ୍ୟକ । ବର୍ଷ ବର୍ଷ ଧରି ସେମାନେ ଦରମା ନେଉଥିବେ ଓ ବସି ବସି ଖାଉଥିବେ । ସେମାନେ ହେଲେ ଆମ ସୈନ୍ୟ ବିଭାଗ । ଆମ ଜୀବନରେ ଆମେ ଥରେ ମାତ୍ର ଯୁଦ୍ଧ ଦେଖିଛୁଁ । କାହିଁ କେବେ କୋଡ଼ିଏ ତିରିଶ ବର୍ଷରେ ଯୁଦ୍ଧ ହେବ ବୋଲି ସୈନ୍ୟମାନେ ପୋଷା ହେଉଥିବେ । ଏହା ବଡ଼ ଅନ୍ୟାୟ ।" ଜଣେ ଅମାତ୍ୟ କହିଲେ ।

"ଠିକ୍! ଏ ବିପୁଳ ଅପବ୍ୟୟ ବନ୍ଦ କରିବାକୁ ହେବ ।" ଏହା କହି ରାଜା ସୈନ୍ୟବାହିନୀ ଭାଙ୍ଗି ଦେବାକୁ ହୁକୁମ୍ ଦେଲେ ।



ଦୁଇମାସ ପରେ ମନ୍ତ୍ରୀଙ୍କ କାନରେ ରାଜା ବୀରଭଦ୍ରଙ୍କ ମୃତ୍ୟୁ ସମ୍ବାଦ ପଡ଼ିଲା । ସେ ତାଙ୍କର ବାକି ଭ୍ରମଣ କାର୍ଯ୍ୟକ୍ରମ ବାତିଲ୍ କରିଦେଇ ରାଜ୍ୟକୁ ଫେରି ଆସିଲେ । ରାଜଧାନୀରେ ପହଞ୍ଚିବା ପୂର୍ବରୁ ଯାହା ଦେଖିଲେ ଓ ଶୁଣିଲେ, ସେଥିରେ ତାଙ୍କର ବିସ୍ମୟ ଓ ଦୁଃଖର ଅନ୍ତ ରହିଲା ନାହିଁ । ରାଜ୍ୟ ବ୍ୟାପି ଅରାଜକତା ବ୍ୟାପିଥାଏ । ଚୋରି ଡକାୟତି ଚାଲିଥାଏ । ବିଦ୍ୟାଳୟ ସବୁ ବନ୍ଦ ହୋଇ ଯାଇଥିବାରୁ ପିଲାଗୁଡ଼ିକ ରାସ୍ତାଘାଟରେ ମାତିଥାନ୍ତି ଓ ଶୃଙ୍ଖଳା ଜ୍ଞାନ ହରାଇଥାନ୍ତି । ଯାହା ସବୁଠାରୁ ବିପଜ୍ଜନକ, ପଡ଼ୋଶୀ ରାଜ୍ୟ ବିକ୍ରମପୁରର ରାଜା ସୁଭଦ୍ର ରାଜ୍ୟ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଥିଲେ ବୋଲି ତାଙ୍କର ଧାରଣା ହେଲା ।

ମନ୍ତ୍ରୀ ଫେରି ଆସିବାରୁ ତତ୍‌କ୍ଷଣ ରାଜା ଜୟବର୍ମା ଖୁବ୍ ଖୁସି ହେଲେ ଓ ସେ ଯାହା ଯାହା କରିଛନ୍ତି, ତାହା ଗପିଗଲେ ।

"ମହାରାଜ, ଆପଣ ଯାହା କରିଛନ୍ତି, ତାହା ଖୁବ୍ ସାହସର କାମ । ତେବେ ତା'ର ଫଳ କ'ଣ ହୋଇଛି ଦେଖିବାର କଥା । ଚାଲନ୍ତୁ, ଛଦ୍ମବେଶ ପକାଇ ରାଜ୍ୟ ବୁଲି ଯିବା ।" ମନ୍ତ୍ରୀ ପ୍ରସ୍ତାବ ଦେଲେ ।

ରାଜା ଉତ୍‌ଫୁଲ୍ଲ ହେଲେ । ଲୋକେ ତାଙ୍କ ଅଭିନବ କାର୍ଯ୍ୟକଳାପର ପ୍ରଶଂସା କରୁଥିବେ ବୋଲି ତାଙ୍କର ସନ୍ଦେହ ନଥିଲା । ସେସବୁ ପ୍ରଶଂସା ଶୁଣିବା ପାଇଁ ସେ ଅଧୀର ହେଉଥିଲେ । ବୁଢ଼ା ବେଶରେ ଦୁହେଁ ବାହାରି ପଡ଼ିଲେ ।

ବେଳବୁଡ଼ ସରିକି ଦୁହେଁ ଗୋଟିଏ ଗାଁରେ ପହଞ୍ଚିଲେ । ଗାଁ ଲୋକଙ୍କର ଗୋଟାଏ ବୈଠକ ହେଉଥାଏ । ବୁଦା ଆଢୁଆଳରୁ ସେମାନେ କାନ ପାରି ସେମାନଙ୍କ ଆଲୋଚନା ଶୁଣିଲେ ।

ସେମାନଙ୍କ ନେତା ଭଳି ଦିଶୁଥିବା ଲୋକ କହୁଥିଲେ, "ଭାଇମାନେ, ଏ ରାଜ୍ୟରେ ହେଲା କ'ଣ ? ଆମେ ଜୀବନ ଧରି ରହିବା କିପରି ? ଏଣେ ଗୁରୁକୁଳ ସବୁ ଉଠି ଯିବାରୁ ଆମ ପିଲାଏଁ କୁସଙ୍ଗରେ ପଡ଼ି ନଷ୍ଟ ହେଲେ । ସିପାହୀ ଜଗୁଆଳ ନାହାନ୍ତି ବୋଲି ଦିନ

ଦୁଇପହରେ ଡକାଏତି ହେଲାଣି । କେହି କାହାକୁ ମାନିବାକୁ ନାହିଁ ।"

"ଖାଲି ସେତିକି? ବିନା ସୈନ୍ୟବାହିନୀରେ କୌଣସି ରାଜ୍ୟ କେବେ ନିରାପଦ ରହିପାରେ? ମୋ ଘରକୁ ବିକ୍ରମପୁରରୁ କୁଣିଆ ଆସିଥିଲେ। ସେମାନେ ଗୋପନରେ ମୋତେ କହିଲେ ତାଙ୍କ ରାଜା ଆମ ରାଜ୍ୟ ଆକ୍ରମଣ କରିବାକୁ ମସୁଧା କରୁଛନ୍ତି । ବିନା ଯୁଦ୍ଧରେ ସେମାନେ ଆସି ଆମକୁ ତାଙ୍କ ଅଧୀନ କରିନେବେ । ଲଜ୍ଜାରେ ମୋତେ ମରିଯିବାକୁ ମନ ହେଉଛି ।" ଆଉ ଜଣେ ନାଗରିକ କହିଲେ ।

"ମରିଗଲେ କ'ଣ ହେବ? ମୁଁ ତ ଭାବୁଛି ଲୋକଙ୍କୁ ମତାଇ ଏ ଅବିବେକୀ ରାଜାକୁ ରାଜପଦରୁ ହଟାଇ ଆଉ କାହାକୁ ସିଂହାସନରେ ବସାଇବାକୁ ହେବ ।" ତୃତୀୟ ବ୍ୟକ୍ତି କହିଲେ ।

"ଆମ ମନ୍ତ୍ରୀ ଯାହା ଏତିକବେଳେ ନାହାନ୍ତି । ସେ ଥିଲେ ଏପରି ହୋଇ ନଥାନ୍ତା ।" ପ୍ରଥମ ଜଣକ ମନ୍ତବ୍ୟ ଦେଲେ ।

ଏସବୁ ଶୁଣି ରାଜାଙ୍କ ମୁହଁ କଳା ପଡ଼ିଗଲା । "ମନ୍ତ୍ରୀବର! ଆଉ କୁଆଡ଼େ ବୁଲିବା ଦରକାର ନାହିଁ ।" ସେ କହିଲେ । ଦୁହେଁ ନଅରକୁ ଫେରି ଆସିଲେ ।

ମନ୍ତ୍ରୀ ବାଟରେ କହିଲେ, "ରାଜା, ହତାଶ ହୁଅନ୍ତୁ ନାହିଁ । ଆପଣ ଭଲ ମଣିଷ, କିନ୍ତୁ ରାଜ୍ୟ ଶାସନରେ ଅଭିଜ୍ଞତା ନାହିଁ । ଆଜି ରାତିକ ଭିତରେ ଆମେ ସିଦ୍ଧାନ୍ତ ବଦଳାଇ ଦେବା ।"

ମନ୍ତ୍ରୀଙ୍କ ପରାମର୍ଶରେ ସେହି ରାତିରେହିଁ ଚତୁର୍ଦ୍ଦିଗକୁ ଘୋଷକମାନଙ୍କୁ ପ୍ରେରଣ କରାଗଲା । ସୈନ୍ୟମାନଙ୍କୁ ଫେରାଇ ଅଣାଗଲା । ସଙ୍ଗେ ସଙ୍ଗେ ସିପାହୀମାନଙ୍କୁ ମଧ୍ୟ । ଲୋକେ ଖୁସି ହେଲେ । ବିକ୍ରମପୁରର ରାଜା ସୁଭଦ୍ର ରାଜ୍ୟ ଆକ୍ରମଣ କରିବାକୁ ଆଉ ସାହସ କଲେ ନାହିଁ ।

ଏସବୁ ବିଭାଗର ପୁନର୍ଗଠନ ସଙ୍ଗେ ସଙ୍ଗେ ଗୁରୁକୁଳମାନ ମଧ୍ୟ ଖୋଲା ହେଲା ।





# ଶ୍ରୀପତିର ଭାଗ୍ୟ

ଶ୍ରୀପତି ପିଲାବେଳରୁ ବାପାମା'ଙ୍କୁ ହରାଇ-ଥାଏ । ଜେଜେବାପା ତାକୁ ପାଳିପୋଷି ମଣିଷ କରିଥିଲେ । ବୁଢ଼ାର ସମ୍ପତ୍ତିବାଡି କିଛି ନଥିଲା । ସେ ଗୃହାଳିରେ ଅବଧାନ ଥିଲେ । ଯାହା ଯେତକ ପାଉଥିଲେ, ସେଥିରେ କୌଣସି ମତେ ନିଜେ ଚଳୁଥିଲେ ଓ ନାତିକୁ ଯେତେଦୂର ସମ୍ଭବ ସୁଖରେ ରଖୁଥିଲେ ।

ହଠାତ୍ ଜେଜେବାପା ମରିଗଲେ । ଶ୍ରୀପତି କାନ୍ଦ ବୋବାଳି ଛାଡ଼ିଲା । ତାକୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା ।

ଜେଜେ ଗୋଟିଏ ପୁଟୁଳାରେ ଅଳ୍ପ କିଛି ଟଙ୍କା ରଖି ଯାଇଥିଲେ । ଶ୍ରୀପତି ସେତକ ଖର୍ଚ୍ଚ କରି କିଛିଦିନ ଚଳିଲା । ସେତକ ଶେଷ ହୋଇଯିବା ପରେ ଗୋଟାଏ ଧନ୍ଦାର ଅନ୍ୱେଷଣରେ ବାହାରିଲା ।

କିନ୍ତୁ ସେ ଯୁଆଡ଼େ ଗଲା ଲୋକେ କହିଲେ, "ତୁ ତ ଚୁପ୍‌ଚାପ୍ ଘରେ ବସି ନହେଲେ ଖେଳି ବୁଲି ଜେଜେ ପଇସାରେ ଖାଉଥିଲୁ । ତୁ କ'ଣ କାମ ଜାଣିଛୁ ଯେ ଆମେ ତୋତେ ଚାକିରି ଦେବୁଁ ?"

ଶ୍ରୀପତି ବିରକ୍ତ ହୋଇ ଘର ଖଣ୍ଡିକ ବିକି କରିଦେଇ ସେଠାରୁ ଦଶ କୋଶ ଦୂରବର୍ତ୍ତୀ ଭୀମପୁରରେ ପହଞ୍ଚିଲା । ଭୀମପୁର ଗୋଟିଏ ବଡ଼ ଗାଁ; ଛୋଟିଆ ସହର କହିଲେ ଚଳେ । ସେଠାରେ ସେ ଜଣେ ଭଦ୍ରଲୋକଙ୍କ ଘରକୁ ଲାଗିଥିବା ତାଙ୍କର ଗୋଟାଏ ବଖରା ଘର ଭଡ଼ାରେ ନେଇ ରହିଲା ଓ ଚାକିରି ଖୋଜିଲା । କିନ୍ତୁ ସେଠି ବି ସେ ଦେଖିଲା ସହଜରେ କେହି ତାକୁ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହନ୍ତି ।

ଶ୍ରୀପତି ଦିନେ ରାତିରେ ଚିନ୍ତାରେ ଶୋଇ ପାରୁ ନଥାଏ । ତାକୁ ଲାଗିଲା ବାଡ଼ ପଟରେ




କିଏ ଯେପରି କାନ୍ଦୁଛି । ସେ ଧୀରେ ଧୀରେ କବାଟ ଖୋଲି ଦେଖିଲା, ଜଣେ ତରୁଣୀ କାନ୍ଦି କାନ୍ଦି ବାଡ଼ି ଭିତରେ ଥିବା ଗଭୀର କୂଅ ଆଡ଼େ ଯାଉଛି । ସେ କୂଅ ଭିତରକୁ ଡେଇଁ ପଡ଼ିବାକୁ ଉଦ୍ୟତ ହେବା ବେଳକୁ ଶ୍ରୀପତି ଦୌଡ଼ି ଯାଇ ତା' ହାତ ଧରି ଟାଣି ଆଣିଲା ଓ ଆଶ୍ଚର୍ଯ୍ୟ ହୋଇ କହିଲା, "ଇଏ କ'ଣ ? ଆତ୍ମହତ୍ୟା ମହାପାପ, ଏକଥା ଜାଣନା ?"

ଝିଅଟି ଆହୁରି କାନ୍ଦିଲା । ଶ୍ରୀପତି ତାକୁ ପାଖରେ ବସାଇ ସାନ୍ତ୍ୱନା ଦେଲା । ଝିଅଟି ଯାହା କହିଲା ତା'ର ସାରାଂଶ ହେଲା, ସେ ଗୃହସ୍ୱାମୀର ପ୍ରଥମ ସ୍ତ୍ରୀର ଝିଅ । ନାମ ପ୍ରମିଳା । ମା ନାହିଁ । ବିମାତା ସର୍ବଦା ତା' ପ୍ରତି ଦୁର୍ବ୍ୟବହାର କରେ । ବିମାତାର ଦୁଇ ଝିଅ । ବର୍ତ୍ତମାନ ପ୍ରମିଳାକୁ ସେମାନେ ଗାଁର ମହାଜନ ସହ ବିବାହ ଦେବାକୁ ବସିଛନ୍ତି । ମହାଜନ ଖାଲି ବୁଢ଼ା ନୁହେଁ, ଅତ୍ୟନ୍ତ ଖରାପ ଲୋକ । ମହାଜନ ସାହାଯ୍ୟରେ ଅନ୍ୟ ଦୁଇ ଝିଅଙ୍କୁ ଉପଯୁକ୍ତ ପାତ୍ରରେ ଦେବା ବିମାତାର ଉଦ୍ଦେଶ୍ୟ ।

ଶ୍ରୀପତି ପ୍ରମିଳାକୁ ବହୁତ ବୁଝାଇଲା । ପ୍ରମିଳା ପୁଣି ଥରେ ଆତ୍ମହତ୍ୟା କରିବାର ଚେଷ୍ଟା କରିବ ନାହିଁ ବୋଲି ପ୍ରତିଶ୍ରୁତି ଦେଲା । ଅବଶ୍ୟ ମହାଜନ ସହ ତା'ର ବିବାହ ଯେପରି ନହେବ, ସେ ଦିଗରେ ସବୁ ବ୍ୟବସ୍ଥା କରିବା ନିମନ୍ତେ ଶ୍ରୀପତି ଜବାବ୍ ଦେଲା ।

ପରଦିନ ଶ୍ରୀପତି ଯାଇ ଗୃହସ୍ୱାମୀ ଓ ତା' ସ୍ତ୍ରୀକୁ ଭେଟି କହିଲା, "ଆଜ୍ଞା, ଝିଅକୁ ଜଣେ ଦୁଷ୍ଟ ବୁଢ଼ା ସହ କାହିଁକି ବିଭା ଦେବେ ?"

"ତମେ ତ ବେକାର ଯୁବକଟିଏ । ତମେ କନ୍ୟାଦାୟର କ'ଣ ବୁଝ ?"

"ଆପଣ ଯଦି ଆପତ୍ତି ନ କରନ୍ତି, ତେବେ ମୁଁ ପ୍ରମିଳାକୁ ବିଭା ହୁଅନ୍ତି ।" ଶ୍ରୀପତି କହିଲା ।

"ତମ ନିଜ ରକ୍ଷଣା ତ ଅସମ୍ଭବ ! ତମେ ପୁଣି ପ୍ରମିଳାକୁ ବିଭା ହେବ ? କେତେମାସ ଯାଏ ଘର ଭଡ଼ା ଦେଇ ପାରିବ କହୋ ?" ବିମାତା ଅଣ୍ଟାଳିଆ ଭାବରେ ପଚାରିଲେ ।

ଶ୍ରୀପତିର ମନ ଅତ୍ୟନ୍ତ ଖରାପ ହୋଇଗଲା । ସେ ଅନ୍ୟ ମନସ୍କ ଭାବରେ କେତେବେଳେ



ଗ୍ରାମପୁର ଘର ପାଖରେ ଥିବା ବଣ ଭିତରେ ପଶି ସାରିଲାଣି, ସେକଥା ଜାଣି ପାରି ନଥାଏ। ଯେତେବେଳେ ବଣ ଭିତରେ ପଶିଲାଣି ବୋଲି ବୁଝିଲା, ସେତେବେଳେ ବି ସେ ବସାକୁ ଫେରିଯିବା ନିମନ୍ତେ କୌଣସି ଆଗ୍ରହ ଅନୁଭବ କଲା ନାହିଁ। ତାକୁ ବହୁତ ଅପମାନ ଓ ଦୁଃଖ ଲାଗୁଥାଏ।

ସେ ଗୋଟାଏ ଗଛ ମୂଳରେ ଶୋଇ ପଡ଼ିଲା।

ଅଧରାତିରେ ଗୋଟାଏ ବିକଟ କଣ୍ଠସ୍ୱର ଶୁଣି ତା' ନିଦ ଭାଙ୍ଗିଗଲା। ସେ ଦେଖିଲା ଗୋଟାଏ ଭୟଙ୍କର ଆକୃତିର କେହି ତାକୁ ଗାଳି ଦେଉଛି।

"କ'ଣ କହୁଛ?" ଶ୍ରୀପତି ପଚାରିଲା।

"କ'ଣ କହୁଛି? ତୋର ସାହସ ତ କମ୍ ନୁହେଁ? ଏଇଟା ମୋ ସ୍ଥାନ। ଏଠି ଶୋଇବାକୁ ତୁ କିଏ? ତୋର ଡର ଭୟ ନାହିଁ?" ସେ ଆକୃତି ପଚାରିଲା।

"ଠିକ୍ ଅଛି, ଠିକ୍ ଅଛି। ମୁଁ ତମ ଜାଗା ଛାଡ଼ି ଦେଉଛି। ରାଗୁଛ କାହିଁକି? ଡରଭୟ କଥା କହୁଛ। ତମେ ପିଶାଚ କି ଭୂତ କି ପ୍ରେତ ହୋଇଥିବ। ହେଲେ ମଣିଷ ତମ ତୁଳନାରେ କ'ଣ କମ୍ ଭୟଙ୍କର ଯେ ମୁଁ ତମକୁ ଡରିବ?" ଶ୍ରୀପତି କହିଲା।

"ବାହା ବାଃ! ଗୋଟାଏ କଥା ଭଲ କଥା କହିଲୁ ଏକା! ଆଚ୍ଛା ବାବୁ, ମଣିଷଙ୍କ ଉପରେ ତୋର ଏତେ ରାଗ କାହିଁକି? ମୁଁ ଜାହିଁ କେତେ ଯୁଗ ତଳେ ମଣିଷ ସମାଜ ଭିତରେ ଥିଲି। ବହୁ କାଳ ହେଲା ମଣିଷଙ୍କ ସହ ମିଶି ନାହିଁ। ସେତେବେଳେ ବି ମଣିଷମାନେ ଭୟଙ୍କର ଥିଲେ। ଏଯାଏ ସେମାନଙ୍କ ଚରିତ୍ର ବଦଳି ନାହିଁ?" ସେ ଆକୃତି ପଚାରିଲା।

"ବଦଳିବ କ'ଣ? ବୋଧହୁଏ ଆହୁରି ଖରାପ ହେଲାଣି!" ଏହା କହି ଶ୍ରୀପତି ତା'ର ସବୁ ଅଭିଜ୍ଞତା କହିଗଲା।

"ଓଃ, ଏମିତି କଥା! ଆଚ୍ଛା ଟୋକା, ତୁ ମନ ଖରାପ କରନା। ତୋତେ ମୁଁ ଗୋଟାଏ ଆଙ୍ଗୁଠି ଦେଉଛି। ଏଇଟି ଲଗାଇ ଯାହାକୁ ଯାହା ମାଗିବୁ ବା କହିବୁ, ସିଏ ତାହା ଦେଇଦେବ ବା ସେଥିରେ ରାଜି ହୋଇଯିବ।



"ତେବେ ମୁଦିଟି ତିନିଥର ମାତ୍ର କାମ ଦେବ ।"
ଏହା କହି ସେ ଆକୃତି ଗୋଟିଏ ତମ୍ବା ମୁଦି ବାହାର କରି ଆଣି ଶ୍ରୀପତିକୁ ଦେଲା । ଶ୍ରୀପତି ତାକୁ ଧନ୍ୟବାଦ ଦେଇ ବସା ଆଡ଼େ ଚାଲିଲା ।

ସକାଳ ବେଳକୁ ସେ ବସାରେ ପହଞ୍ଚି ଗାଧୁଆ ପାଧୁଆ କରି ଜଣେ ବିଶିଷ୍ଟ ବ୍ୟବସାୟୀଙ୍କ ଘରେ ପହଞ୍ଚି କହିଲା, "ଆଜ୍ଞା, ମୋତେ ଗୋଟିଏ ଚାକିରି ଦିଅନ୍ତୁ ।"

କେଇଦିନ ତଳେ ତାଙ୍କୁ ଶ୍ରୀପତି ଏହି ଅନୁରୋଧ କରିଥିଲା । ବ୍ୟବସାୟୀ ତାକୁ ରୁକ୍ଷ ଭାବରେ ମନା କରି ଦେଇଥିଲେ । କିନ୍ତୁ ଆଜି କହିଲେ, "ନିଶ୍ଚୟ, ନିଶ୍ଚୟ ! ମୁଁ ତ ତମ ଭଳି ଜଣେ ଯୁବକ ପାଇଲେ ଧନ୍ୟ ହେବି !"

ଏହା ପରେ ସେ ଶ୍ରୀପତିକୁ ତାଙ୍କ ସମସ୍ତ ବ୍ୟବସାୟ ଉପରେ ତତ୍ତ୍ୱାବଧାରକ ନିଯୁକ୍ତି କଲେ । ତାଙ୍କର ସମସ୍ତ କର୍ମଚାରୀଙ୍କ ଅପେକ୍ଷା ତାର ଦରମା ହେଲା ଅଧିକ ।

ସେଠାରୁ ଯାଇ ଶ୍ରୀପତି ଗୃହସ୍ୱାମୀ ଘରେ ପହଞ୍ଚିଲା ଓ ତାଙ୍କ ସ୍ତ୍ରୀଙ୍କୁ କହିଲା, "ମା ! ମୁଁ ଚାକିରି ପାଇ ଯାଇଛି । ବର୍ତ୍ତମାନ ପ୍ରମିଳା ସହିତ ମୋର ବିବାହ ଦିଅନ୍ତୁ ।"

"ନିଶ୍ଚୟ ପୁଅ, ନିଶ୍ଚୟ ! ତୁମକୁ ଝିଅ ନଦେଇ ଆଉ କାହାକୁ ଦିଅନ୍ତି ? ଏଇ ମାସ ଭିତରେ ପ୍ରଥମେ ଯେଉଁ ଶୁଭ ତିଥି ପଡ଼ିବ, ସେହିଦିନ ବିବାହ ହୋଇଯିବ ।"

ପନ୍ଦର ଦିନ ଭିତରେ ବିବାହ ହୋଇଗଲା । ପ୍ରମିଳା ଆଶ୍ଚର୍ଯ୍ୟ ହୋଇ ଶ୍ରୀପତିକୁ ପଚାରିଲା, "ହଠାତ୍ କିପରି ମୋ ବିମାତାର ମନ ବଦଳାଇ ଦେଇ ପାରିଲ ? ବଡ଼ ତାଜୁବ୍ କଥା !"

ଶ୍ରୀପତି ବଣ ଭିତରେ ଅଶରୀରୀ ସହ କିପରି ସାକ୍ଷାତ୍ ହେଲା ଓ କିପରି ସେ ମୁଦିଟି ପାଇଲା, ସବୁ କହିଗଲା ।

"ପୁଚ୍ଛୁଣା ତମ୍ବାମୁଦି ? ତାକୁ ତ ମୁଁ ଫୋପାଡ଼ି ଦେବାକୁ ବସିଥିଲି !" ଏହା କହି ପ୍ରମିଳା ମୁଦିଟି ନେଇ ଆସିଲା ଓ କହିଲା, "ତମେ ଏହାକୁ ଏପରି ଅଯତ୍ନରେ ପକାଇ ଦେଇଥିଲ କିପରି ?"

"ମୁଦିଠୁଁ ଯାହା ପାଇବା କଥା, ତାହା ପାଇ ସାରିଛି ।" ଶ୍ରୀପତି ଉତ୍ତର ଦେଲା ।

"ତମେ ତ ଆହୁରି ବହୁତ ବେଶି ପାଇ ପାରିଥାନ୍ତ ! ବ୍ୟବସାୟୀଙ୍କୁ ଖାଲି ଗୃହଟି ଦେବାକୁ କହିବା ପରିବର୍ତ୍ତେ ତା ବ୍ୟବସାୟରୁ ଅଂଶ ଦେବାକୁ କହିପାରିଥାନ୍ତ । ମୋ ବମାତାଙ୍କୁ ଏ ଘର ମାଗି ପାରିଥାନ୍ତ !"

"ତାହା ମୋ ଲୋଭର ପ୍ରମାଣ ହୋଇଥାନ୍ତା । ମୁଁ ଯଦି ସଚ୍ଚୋଟ ଭାବରେ କାମ କରିବି, ବ୍ୟବସାୟୀ ନିଜେ ମୋତେ ଅଂଶ ଦେଇ ପାରନ୍ତି । ଆଉ ଘରଟିଏ ବି କାହିଁକି ଆଉ କାହା ଉପରୁ ପଠାଇବି ?" ଶ୍ରୀପତି ଉତ୍ତର ଦେଲା ।

"ସେ ଯାହା ହେଉ । ମୂଷା ତିନିଥର କାମ ଦେବା କଥା । ତୁମେ ଦୁଇଥର କାମ ଉଠାଇଛ । ଥରୁଟିଏ ବାକି ଅଛି । ତମର ଯଦି ଆଗ୍ରହ ନାହିଁ, ମୁଁ ଏହାକୁ ପିନ୍ଧି ବ୍ୟବସାୟୀଙ୍କୁ କହିବି କି ସେ ତମକୁ ବେପାରରୁ ଅଂଶ ଦେଉ ! ତୁମେ ରାଜି ତ ?" ପ୍ରମିଳା ମୁଦିଟି ପିନ୍ଧି ପକାଇ ପ୍ରଶ୍ନ କଲା ।

"ନିଶ୍ଚୟ ।" ଶ୍ରୀପତି କହିଲା ।

ପ୍ରମିଳା ଆନନ୍ଦରେ ତାଳି ମାରିଲା । କିନ୍ତୁ ସଙ୍ଗେ ସଙ୍ଗେ ଶ୍ରୀପତି ହସି ଉଠିଲା ଓ କହିଲା, "ଆଉ ବ୍ୟବସାୟୀ ପାଖକୁ ଯିବ କ'ଣ ? ତମେ ତ ତୃତୀୟ ଇଚ୍ଛା ମୋଠୁଁ ପୂରଣ କରି-ନେଲ । ମୁଦି ପିନ୍ଧିସାରି ବ୍ୟବସାୟୀ ପାଖକୁ ଯିବ କି ବୋଲି ପଚାରିଲ ଓ ମୁଁ ରାଜି ହୋଇଗଲି । ଏହା ପରେ ମୁଦିର ଆଉ କୌଣସି କରାମତି ନାହିଁ ।"

ପ୍ରମିଳା ଦୁଃଖରେ କାନ୍ଦି ପକାଇଲା ।

ଶ୍ରୀପତି ବୁଝାଇଲା, "ଦେଖ, ଲୋଭରୁ ଏ ଅଶ୍ରୁ ବାହାରିଲା । ଲୋଭର ଶେଷ ନାହିଁ । କେଇଦିନ ତଳେ ତମେ କହିଥିଲ କି ମୋତେ ବାହା ହୋଇ ପାରିଲେ ତମର ଅନ୍ୟ କିଛି ଦରକାର ନାହିଁ । ଆଜି କିନ୍ତୁ ଯାହା ଆମର ପ୍ରାପ୍ୟ ନୁହେଁ, ତାହା ନ ପାଇ କାନ୍ଦୁଛ !"

ପ୍ରମିଳା ଆଖି ପୋଛି ହସିଲା ଓ କହିଲା, "ବାସ୍ତବିକ, ମୁଁ କେଡ଼େ ଭୁଲ୍ କରୁଥିଲି !"





# ପ୍ରଚାରକ

ଗୋଟିଏ ସହରରେ ଦାଊଦ୍ ନାମକ ଜଣେ ବେପାରୀ ଥିଲେ । ସେ ଥିଲେ ଜଣେ ସତ୍ ଲୋକ । ସହରର ଲୋକେ ତାଙ୍କୁ ଭଲ ପାଉଥିଲେ । ସେ ଦୂରବର୍ତ୍ତୀ ସହରମାନଙ୍କୁ ବେପାର କରିବାକୁ ଯାଉଥିଲେ । ସେ ବିଶେଷ ଧନୀ ନ ହେଲେ ବି ସ୍ୱଚ୍ଛନ୍ଦରେ ଚଳୁଥିଲେ । ଇଚ୍ଛା କଲେ ଅନେକ ଲୋକଙ୍କଠାରୁ ଅନେକ ପ୍ରକାର ସାହାଯ୍ୟ ପାଇ ସେ ବହୁତ ଧନୀ ହୋଇ ପାରନ୍ତେ । କିନ୍ତୁ ତାଙ୍କର ସେଭଳି କୌଣସି ଉଚ୍ଚାକାଂକ୍ଷା ନଥିଲା ।

ଦିନେ ଦାଊଦ୍ ଓଟରେ ଜିନିଷପତ୍ର ଲଦି ନିଜ ସହରରୁ ଅନ୍ୟ ସହରକୁ ଯାଉଥାନ୍ତି; ବାଟରେ ବିଶ୍ରାମ କରିବା ନିମନ୍ତେ ଗୋଟିଏ ଗଛ ମୂଳରେ ବସି ପଡ଼ିଲେ । ସେତିକିବେଳେ ସେଠାରେ ଆସି ପହଞ୍ଚିଲେ ଦୁଇଜଣ ଯୁବକ । ସେମାନେ ବି ନିଜ ନିଜ ଓଟରେ ଜିନିଷପତ୍ର ଲଦି ଆସିଥାନ୍ତି ।

ସେମାନେ ଦାଊଦ୍‌କୁ ନମସ୍କାର କଲେ ଏବଂ ପଚାରିଲେ, "ମହାଶୟ, ଆପଣ କେଉଁ ଆଡ଼େ ଯାଉଛନ୍ତି ?"

ଦାଊଦ୍ ତାଙ୍କ ଗନ୍ତବ୍ୟ ସ୍ଥାନର ନାମ କହିବାରୁ ସେମାନେ କହିଲେ, "ଆମେ ବି ସେଇଠିକୁ ଯାଉଛୁଁ । ଆଜି ଆପଣଙ୍କୁ ସାଥି ରୂପେ ପାଇ ଆମେ ନିଜ ନିଜକୁ ଭାଗ୍ୟବାନ ମନେ କରୁଛୁଁ । ଆପଣଙ୍କ ଖ୍ୟାତି ବହୁତ ଶୁଣିଛୁଁ ।"

ଦାଊଦ୍ ସରଳ-ବିଶ୍ୱାସୀ ଲୋକ । ସେ ଖୁସି ହେଲେ ଓ କହିଲେ, "ମୋ ବିଷୟରେ ଶୁଣିବାର ବା କ'ଣ ଅଛି ? ମୁଁ ସାଧାରଣ ଲୋକ । ବେପାର କରି ଚଳେଁ । ଲୋକେ ମୋତେ ବିଶ୍ୱାସ କରନ୍ତି ସେମାନଙ୍କ ଭଲ ଗୁଣ

ଯୋଗୁଁ । ଅବଶ୍ୟ ମୁଁ କାହାକୁ ଠକେ ନାହିଁ । ମୋତେ ବି କେହି କେବେ ଠକେ ନାହିଁ । ଭଗବାନ ଅଛନ୍ତି । ସିଏ ସମସ୍ତଙ୍କୁ ରକ୍ଷା କରନ୍ତି ।"

"ଆହା! ଆପଣଙ୍କଠାରୁ ଏ କଥା ଶୁଣି ଆମକୁ କେତେ ଭଲ ଲଗୁଛି! ଆପଣଙ୍କ ସହ ଦେଖା ହେବା ଆମର ଭାଗ୍ୟ । ସାଧୁ ଭାବରେ ବେପାର କରିବା ଆମର ବି ଉଦ୍ଦେଶ୍ୟ । ଆପଣ ଆମର ଗୁରୁ ବୋଲି କହିବା!" ଦୁଇ ଯୁବକ ପରସ୍ପର ଚହାଁଚହିଁ ହୋଇ ଆଖିମାରି କହିଲେ ।

ଦାଉଦ୍ ଖୁସି ହେଲେ ।

ବାଟରେ ତିନିଜଣ ଯାକ ଯାଇ ଗୋଟିଏ ଚଟିଘରେ ଆଶ୍ରୟ ନେଲେ । "ମହାଶୟ! ଚାଲନ୍ତୁ ଯିବା—ଅଳ୍ପ ଦୂରରେ ଥିବା ଭୋଜନାଳୟରୁ ଖାଇ ଆସିବା ।" ଯୁବକ ଦୁଇଜଣ କହିଲେ ।

ଦାଉଦ୍ ମନା କଲେ । ସେ କହିଲେ, "ମୋତେ ଭୋକ ନାହିଁ । ପାଖରେ ଖଣ୍ଡିଏ ରୋଟି ଅଛି । ଖାଇ ଶୋଇ ପଡ଼ିବି ।"

ଯୁବକ ଦୁଇଜଣ ହତାଶ ହେଲେ । ସେମାନଙ୍କ ଉଦ୍ଦେଶ୍ୟ ଥିଲା ଭିନ୍ନ । ଭୋଜନାଳୟକୁ ଯିବା ପାଇଁ ଗୋଟିଏ ଅନ୍ଧକାର ଗଳି ରାସ୍ତା ଥିଲା । ସେହି ରାସ୍ତା ଭିତରେ ଦାଉଦଙ୍କୁ ହତ୍ୟା କରି ସେମାନେ ତାଙ୍କ ଜିନିଷପତ୍ର ମାରି ନେବାକୁ ଚାହୁଁଥିଲେ ।



ଦୁଇ ଯୁବକ ବାହାରି ଯାଇ ଗୋପନରେ ସିଦ୍ଧାନ୍ତ କଲେ କି ବାଟରେ ସେମାନେ ଦାଉଦ୍‌ଙ୍କୁ ହତ୍ୟା କରି ତାଙ୍କ ଜିନିଷପତ୍ର ନେଇ ନେବେ ।

ଚଟିଘରର ପୂର୍ବକୁ ଗୋଟିଏ ଭୋଜନାଳୟ ଥିଲା । ଆଉ ଗୋଟିଏ ଥିଲା ପଶ୍ଚିମକୁ । ଦୁହେଁ ଠିକ୍ କଲେ କି ଜଣେ ଯିବ ପୂର୍ବକୁ, ଆଉ ଜଣେ ଯିବ ପଶ୍ଚିମକୁ । ଦୁଇ ଜଳଖିଆ ଦୋକାନରେ ଯାହା ଯାହା ଭଲ ଜିନିଷ ଅଛି ନେଇ ଆସି ଦୁହେଁ ବାଣ୍ଟି ଖାଇବେ ।

ଘଣ୍ଟାକ ପରେ ଦୁହେଁ ଫେରି ଆସିଲେ । ଦେଖିବା ବେଳକୁ ଦୁହେଁ ଆଣିଥିଲେ ରୋଟି ଓ ଦୁଧ ।

"ଏକା ଜିନିଷ ଯେତେବେଳେ ଆଣିଛୁଁ, ଚାଲ୍ ତମେ ଆଣିଥିବା ଦୁଧ ରୋଟି ମୁଁ ଖାଇବି, ମୋ ଆଣିଥିବା ଦୁଧ ରୋଟି ତମେ ଖାଇବ ।" ଜଣେ ଯୁବକ ଅନ୍ୟ ଜଣକୁ କହିଲା । ଦ୍ୱିତୀୟ ଜଣକ ଆନନ୍ଦରେ ରାଜି ହେଲା ।

ଦୁହେଁ ବସି ଖିଆପିଆ କରୁଥିଲେ, ହଠାତ୍ ଆର୍ତ୍ତନାଦ ଶୁଭିଲା । ସେତେବେଳକୁ ଚଟିଘରେ ଆଉ କେତେଜଣ ପଥିକ ଆସି ଆଶ୍ରୟ ନେଇଥିଲେ । ସେମାନେ ଦାଉଦ୍‌ଙ୍କ ପରିଚିତ । ସେମାନେ ଓ ଦାଉଦ୍ ଦଉଡ଼ି ଆସିଲେ ।

ଯୁବକ ଦୁଇଜଣ ପରସ୍ପର ଅଙ୍ଗୁଳି ନିର୍ଦ୍ଦେଶ କରୁଥିଲେ । ସେତେବେଳକୁ କଥା କହିବା ଶକ୍ତି କାହାର ନଥିଲା । ଗୁହୁଁ ଗୁହୁଁ ଦୁହେଁ ମରିଗଲେ ।

ପ୍ରତ୍ୟେକେ ନିଜେ କିଣିଥିବା ରୋଟି ଓ ଦୁଧରେ ବିଷ ମିଶାଇ ଆଣିଥିଲେ । ଦୁହେଁ ଭାବିଥିଲେ ଅନ୍ୟ ଜଣକ ମରିଗଲେ ସେ ଦାଉଦ୍‌ଙ୍କୁ ମାରି ତାଙ୍କର ସବୁ ଜିନିଷ ନେଇଯିବ ।

ଦାଉଦ୍ ଦୁଃଖ କରି କହିଲେ, "ଆହା! ଏ ଦୁହେଁ ନୂଆ ବେପାରି । ଅକାଳରେ ମରିଗଲେ!"

ଦାଉଦ୍‌ଙ୍କ ପରିଚିତ ଲୋକେ ଯୁବକ ଦୁହିଁଙ୍କୁ ଲକ୍ଷ୍ୟ କରି କହିଲେ, "ବେପାରି? ଏ ଦୁହେଁ ତ ଜଣାଶୁଣା ଠକ । ନରହତ୍ୟା ବି କରିଛନ୍ତି!" ତା'ପରେ ସେମାନେ ଯୁବକ ଦୁହିଁଙ୍କ ବୋଝ ଖୋଲି ଦେଖିଲେ, ସେଥିରେ ଖାଲି ଛିଣ୍ଡା କନା ଓ ଶୁଖିଲା ପତ୍ର ଛଡ଼ା ଆଉ କିଛି ନାହିଁ ।"

"ଦାଉଦ୍ ଭାଇ! ତମେ ଠକ ହାତରେ ପଡ଼ିଥିଲ । ମରିଥାନ୍ତ । ଦଇବ ତମକୁ ବଞ୍ଚାଇ ଦେଲା ।" ଦାଉଦ୍‌ଙ୍କ ପରିଚିତ ବଣିକମାନେ କହିଲେ ।

ଦାଉଦ୍ ମନେ ମନେ ଈଶ୍ୱରଙ୍କୁ ଧନ୍ୟବାଦ ଦେଲେ ଓ କହିଲେ, "ଭଗବାନ ଯାହାକୁ ରଖିବେ, ତା'ର ବା କିଏ କ'ଣ କରି ପାରିବ?"





# ଶିବ ପୁରାଣ

ତାରକାସୁର ପ୍ରଥମ ଯୁଦ୍ଧ ପରେ କ୍ରୋଧରେ ଜଳି ଉଠିଲା ଓ ତା'ପରେ ନିଜ ନଗରକୁ ଫେରି ଆସିଲା । ନଗରର ଏକ ନିଭୃତ ସ୍ଥାନରେ ସେ ଶିବ ପଞ୍ଚାକ୍ଷରୀ ମନ୍ତ୍ର ଜପ କରି ଧ୍ୟାନ କରିବାକୁ ଲାଗିଲା । ଧ୍ୟାନ ସମୟରେ ଆକାଶବାଣୀ ହେଲା, "ତାରକ, ତୁ ଚିନ୍ତା କରନା, ମୁଁ ତୋତେ ମୋକ୍ଷ ପ୍ରଦାନ କରିବି ।" ତା'ପରେ ତାରକ ଅଧିକ ଶକ୍ତିଶାଳୀ ହୋଇ ଶିବଲିଙ୍ଗ କଣ୍ଠରେ ଧାରଣ କରି ଯୁଦ୍ଧକ୍ଷେତ୍ରକୁ ଗଲା ।

କୁମାର ଓ ତାରକଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା । କୁମାର ତାରକକୁ ଯେତେ ଅସ୍ତ୍ର ନିକ୍ଷେପ କଲେ ମଧ୍ୟ ତାରକର କୌଣସି କ୍ଷତି ହେଉ ନଥାଏ । ଶେଷରେ ନାରଦ ଆସି କୁମାରଙ୍କୁ କହିଲେ, "କୁମାର, ତାରକ କଣ୍ଠରେ ଯେତେ ପର୍ଯ୍ୟନ୍ତ ଶିବଲିଙ୍ଗ ଥିବ ସେତେ ପର୍ଯ୍ୟନ୍ତ କେହି ତାକୁ ପରାସ୍ତ କରି-ପାରିବେ ନାହିଁ ।"

ନାରଦଙ୍କ କଥା କୁମାର ମନେ ରଖିଥା'ନ୍ତି । ଯୁଦ୍ଧ ସମୟରେ ସୁଯୋଗ ପାଇ କୁମାର ଏକ ଆଗ୍ନେୟାସ୍ତ୍ର ନିକ୍ଷେପ କଲେ । ତାହା ତାରକର କଣ୍ଠହାରକୁ ଛିଣ୍ଡାଇ ଦେବାରୁ ଲିଙ୍ଗ ତଳେ ଖସିପଡି ପାଞ୍ଚଖଣ୍ଡ ହୋଇଗଲା । ତତ୍କ୍ଷଣାତ୍ କୁମାର ବ୍ରହ୍ମଅସ୍ତ୍ର ପ୍ରୟୋଗ କରି ତାରକକୁ ବଧ କଲେ । ଏଣେ ଦେବତାମାନେ ସେହି ଶିବଲିଙ୍ଗର ପାଞ୍ଚଖଣ୍ଡକୁ ଗୋଟାଇ ନେଇ ପାଞ୍ଚଗୋଟି ସ୍ଥାନରେ ପ୍ରତିଷ୍ଠା କରାଇଲେ । ଏହାର ନାମ ହେଲା ପଞ୍ଚଲିଙ୍ଗେଶ୍ୱର ।

୮. ବଲ୍ଲୀ ବରାହ



ତାରକାସୁର ବଧ ହେବା ପରେ କୁମାର କିଛିଦିନ ସ୍ୱର୍ଗରେ ବିଶ୍ରାମ କଲେ ଓ ତା'ପରେ ପିତାମାତାଙ୍କୁ ଦେଖା କରିବା ପାଇଁ କୈଳାସକୁ ଲେଉଟି ଆସିଲେ ।

କୈଳାସରେ ଥିବା ସମୟରେ ଥରେ ସେ ସଖା ସହଚର ପରିବେଷ୍ଟିତ ହୋଇ ବନବିହାର କରୁଥା'ନ୍ତି । ଏହି ସମୟରେ ସେଠାରେ ମହର୍ଷି ନାରଦ ଆସି ପହଞ୍ଚିଲେ ।

କୁମାର ତ୍ରିଲୋକର କୁଶଳ ଜିଜ୍ଞାସା କରନ୍ତେ ନାରଦ କହିଲେ, "କୁମାର, ଆପଣଙ୍କ କୃପାରୁ ସବୁ ମଙ୍ଗଳ । ରାକ୍ଷସମାନଙ୍କର ନିଧନ ପରଠାରୁ ଋଷିମାନେ ଯାଗଯଜ୍ଞ ଭଲ ଭାବରେ କରୁଛନ୍ତି, କିନ୍ତୁ ମୁଁ ଆସିଛି ଆପଣଙ୍କୁ ଆଉ ଏକ ସମାଚାର ଦେବାକୁ । ଏଠାରୁ କିଛି ଦୂରରେ ଭିଲପୁର ନାମରେ ଏକ ଗ୍ରାମ ଅଛି । ସେଠାରେ ପୁଲିନ୍ଦ ନାମରେ ରାଜା ଭିଲ୍ ମାନଙ୍କୁ ଶାସନ କରନ୍ତି । ସେ ଜଣେ ଈଶ୍ୱର ଭକ୍ତ । ବହୁତ ଦିନ ପର୍ଯ୍ୟନ୍ତ ତାଙ୍କର କୌଣସି ପିଲାପିଲି ହେଲେ ନାହିଁ । ତେଣୁ ରାଜା ଓ ରାଣୀ ଦୁଃଖରେ କାଳାତିପାତ କରୁଥା'ନ୍ତି । ଦିନେ ରାଜା ପୁଲିନ୍ଦ ବନବିହାର କରିବାବେଳେ ଗହନ ଜଙ୍ଗଲରୁ ଏକ ଶିଶୁର କ୍ରନ୍ଦନ ଶୁଣି ପାରିଲେ ସେ ଶବ୍ଦ ବାରି ବାରି ଯାଇ ଘଟଣାସ୍ଥଳରେ ଦେଖିଲେ ଏକ ସୁନ୍ଦର ଶିଶୁ କନ୍ୟାଟିଏ କିଏ ଛାଡି ଚାଲି ଯାଇଛି । ସେ ଶିଶୁଟିକୁ ଆଣି ନିଜ ପତ୍ନୀ ହାତରେ ଦେଲେ । ଶିଶୁକନ୍ୟାଟି ଈଶ୍ୱରଙ୍କ ଦାନ ଭାବି ପତିପତ୍ନୀ ଦୁହେଁ ଆନନ୍ଦରେ ଶିଶୁଟିକୁ ଲାଳନ-ପାଳନ କଲେ । ସମୟ କ୍ରମେ ଉକ୍ତ ଶିଶୁଟି ଚନ୍ଦ୍ରକଳା ପ୍ରାୟ ବଢ଼ିବାକୁ ଲାଗିଲା । ତା'ର ସୌନ୍ଦର୍ଯ୍ୟର ଓ ଗୁଣର ତୁଳନା ନାହିଁ, ତା'ର ନାମ ହେଉଛି 'ବଲ୍ଲୀ' । ଥରେ ବ୍ରହ୍ମାଙ୍କ ପାଖରେ ମୁଁ 'ବଲ୍ଲୀ' ବିଷୟରେ କଥାବାର୍ତ୍ତା ହେଉଥିଲି । ବ୍ରହ୍ମା କହିଲେ 'ବଲ୍ଲୀ' କୁମାରଙ୍କ ପାଇଁ ଉଦ୍ଦିଷ୍ଟ । ତେଣୁ ଆପଣ ସେଠାକୁ ଶୀଘ୍ର ଯାଇ ତାଙ୍କୁ ବିବାହ କରି ସମସ୍ତଙ୍କୁ ଆନନ୍ଦ ପ୍ରଦାନ କରନ୍ତୁ ।"

'ବଲ୍ଲୀ' ବିଷୟରେ କୁମାରଙ୍କୁ ସବୁକଥା କହିବା ପରେ ନାରଦ ସେଠାରୁ ଯାଇ ଭିଲ୍



ରାଜା ପୁଲିନ୍ଦଙ୍କ ପାଖରେ ପହଞ୍ଚିଲେ । ରାଜା ପୁଲିନ୍ଦ ନାରଦଙ୍କୁ ଅତି ଭକ୍ତି ଓ ଶ୍ରଦ୍ଧା ସହକାରେ ସ୍ୱାଗତ କଲେ ଓ ଅତି ବିନମ୍ର ଭାବରେ ପଚାରିଲେ, "ମୁନିବର, କୃପା କରି କୁହନ୍ତୁ ଆମ ଝିଅ "ବଲ୍ଲୀ"ର ରୂପ ଗୁଣରେ ସମକକ୍ଷ ସ୍ୱାମୀ କିଏ ହୋଇପାରେ ।"

ନାରଦ କହିଲେ, "ଶୁଣ ପୁଲିନ୍ଦ, ଏହି କନ୍ୟାର ଯୋଗ୍ୟ ପତି ହେଉଛନ୍ତି ଶିବପୁତ୍ର କୁମାରସ୍ୱାମୀ । ସେ ନିକଟ ଭବିଷ୍ୟତରେ ଏହି ଅଞ୍ଚଳକୁ ବନବିହାର କରିବାକୁ ଆସିବେ ଓ ବଲ୍ଲୀକୁ ଦେଖି ମୁଗ୍ଧ ହେବେ । ସେତେ-ବେଳେ ତୁମେ ସେମାନଙ୍କର ବିବାହ ପ୍ରସ୍ତାବ କରିବ । ବିବାହ ତ ନିଶ୍ଚୟ ହେବ । ଆଜି ଦେଖ ତୁମର ଭାଗ୍ୟ କେତେ ଭଲ !"

ତା'ପରେ ନାରଦ ସେଠାରୁ ଚାଲିଗଲେ ।

ନାରଦଙ୍କଠାରୁ ବଲ୍ଲୀ ବିଷୟରେ ଶୁଣିବା ଦିନଠାରୁ କୁମାରଙ୍କ ମନରେ କୌତୁହଳ ଜାତ ହେଲା । ସେ ବଲ୍ଲୀ ବିଷୟରେ ଅଧିକ ଜାଣିବାକୁ ଚାହିଁଲେ । ପୁଣି ସେ ଭାବିଲେ ଯେ ବଲ୍ଲୀ ଯଦି ରୂପ ଗୁଣରେ ଅତୁଳନୀୟ ହୋଇଥାଏ ତେବେ ତ ସେ ନିଶ୍ଚିତ ଭାବରେ ତାକୁହିଁ ବିବାହ କରିବେ । କିନ୍ତୁ ଭିଲ କନ୍ୟା ବୋଲି ଯଦି ଶିବପାର୍ବତୀ ରାଜି ନ ହୁଅନ୍ତି ? ଏହିପରି ନାନା କଥା ଚିନ୍ତା କରୁ କରୁ କୁମାର ତାଙ୍କର ବନ୍ଧୁଗଣଙ୍କୁ ନେଇ ଭିଲ ପୁରର ନିକଟବର୍ତ୍ତୀ ବନକୁ ବିହାର କରିବାକୁ ଗଲେ ।

ନାରଦଙ୍କ କଥା ଶୁଣି କୁମାର ଯେପରି ଚିନ୍ତାମଗ୍ନ ଥିଲେ ସେହିପରି ବଲ୍ଲୀ ମଧ୍ୟ ମନ ଭିତରେ କୁମାରଙ୍କୁ ଦେଖିବା ପାଇଁ ବ୍ୟଗ୍ର ହୋଇ ଉଠିଥିଲେ । ସେ ମଧ୍ୟ ଚିନ୍ତିତା ହୋଇ ପଡ଼ିଲେ ଭବିଷ୍ୟତ କଥା ଭାବି । ଆନନ୍ଦ ଓ ଆଶଙ୍କା ମଧ୍ୟରେ ସେ ସମୟ କଟାଉଥା'ନ୍ତି ।

ଚିନ୍ତାରୁ ମୁକ୍ତି ପାଇବା ପାଇଁ ଦିନେ ବଲ୍ଲୀ ସହଚରୀମାନଙ୍କ ସହିତ ବନ ବିହାର କରିବାକୁ ଗଲେ । ବନରେ ବୁଲି ବୁଲି କ୍ଳାନ୍ତ ହୋଇ ସେମାନେ ଗୋଟିଏ ଗଛ ତଳେ ବିଶ୍ରାମ କରୁଥା'ନ୍ତି । ଦେଖିଲେ ଅଦୂରରେ ଅନ୍ୟ ବୃକ୍ଷ ଛାୟାରେ କେତେକ ଯୁବକ ବିଶ୍ରାମ କରୁଛନ୍ତି । ବଲ୍ଲୀଙ୍କ ସଖୀ ବିଚାରି ବୁଝିଲେ

ସମସ୍ତଙ୍କ ମଧ୍ୟରେ ଯିଏ ଶ୍ରେଷ୍ଠ ସେ ହିଁ କୁମାରସ୍ୱାମୀ । ବଲ୍ଲୀଙ୍କ ସଖୀ କହିଲା, "ଆପଣ କେଉଁ ଦେଶରୁ ଆସିଛନ୍ତି? ଏହି ପୁଷ୍ପବାଟିକା ଭିଲ ରାଜକୁମାରୀ ବଲ୍ଲୀଙ୍କର । ଏଠାରେ ପୁରୁଷମାନଙ୍କର ପ୍ରବେଶ ନିଷେଧ ।"

ଏକଥା ଶୁଣି କୁମାର ଅଧିକ ଆଗ୍ରହାନ୍ୱିତ ହୋଇ କହିଲେ, "ଭଦ୍ରେ, ମୋ ନାମ କୁମାରସ୍ୱାମୀ । ମୁଁ ଶିବପାର୍ବତୀଙ୍କ ପୁତ୍ର । "ତୁମ ସଖୀଙ୍କର ବିବାହ ହୋଇ ସାରିଛି କି?" କୁମାରସ୍ୱାମୀ ପଚାରିଲେ ।

"ପ୍ରସ୍ତାବ ତ ପଡୁଛି । କିନ୍ତୁ ବିବାହ ହୋଇ ନାହିଁ ।" ଶୁଭା କହିଲା ।

"ଆଚ୍ଛା, କହିପାରିବ ବିବାହ ପ୍ରସ୍ତାବ କେଉଁଠି ଓ କାହା ସହିତ ପଡ଼ୁଛି?" କୁମାର ପଚାରିଲେ ।

"ମନେ ହେଉଛି ଆପଣ ବୋଧହୁଏ ଜାଣି ଜାଣି ପଚାରୁଛନ୍ତି । ତେବେ ଶୁଣନ୍ତୁ । କିଛି ଦିନ ଆଗରୁ ନାରଦ ଆସି ଭିଲ ରାଜା ପୁଲିନ୍ଦଙ୍କୁ କହିଯାଇଛନ୍ତି ଯେ ବଲ୍ଲୀ କୁମାରଙ୍କୁ ବିବାହ କରିବା ବିଧିନିର୍ଦ୍ଦିଷ୍ଟ । ରାଜା ମଧ୍ୟ ଆନନ୍ଦରେ କୁମାରଙ୍କ ବାଟ ଚାହିଁ ବସିଛନ୍ତି । ଆଉ ଆମ ସଖୀ; ସେ ଆପଣଙ୍କ କଥା ଛଡ଼ା ଆଉ କିଛି ବୋଧହୁଏ ଭାବୁ ନାହାନ୍ତି । ଏଇ ଦେଖନ୍ତୁ ସେଇ ଗଛତଳେ ସଖୀମାନଙ୍କ ଗହଣରେ ଆମ ସଖୀ ବସିଛନ୍ତି । ମନେହୁଏ ଆପଣ ଦୁହିଁଙ୍କର ମିଳନ ପାଇଁ ଅନୁକୂଳ




ସମୟ ଉପସ୍ଥିତ । ଆପଣ ଅପେକ୍ଷା କରନ୍ତୁ ମୁଁ ସଖୀଙ୍କୁ ନେଇ ଆସୁଛି ।" ଶୁଭା କହିଲା ।

କିଛି ସମୟ ପରେ ସଖୀମାନଙ୍କ ଦ୍ୱାରା ପରିବେଷ୍ଟିତା ହୋଇ ବଲ୍ଲୀ ସେଠାକୁ ଆସିଲେ । କୁମାରସ୍ୱାମୀ ବଲ୍ଲୀଙ୍କର ସୌନ୍ଦର୍ଯ୍ୟରେ ମୁଗ୍ଧ ହେଲେ । ବଲ୍ଲୀ ମଧ୍ୟ କୁମାରଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହେଲେ । ବଲ୍ଲୀଙ୍କର ସଖୀମାନେ ଓ କୁମାରଙ୍କ ସଖାମାନେ କଥାବାର୍ତ୍ତା କରି ଦୁହିଁଙ୍କର ବିବାହ ପାଇଁ ସ୍ୱୀକୃତ ବିଷୟ ନିଶ୍ଚିତ କଲେ । ତା'ପରେ ବଲ୍ଲୀ ଓ ତାଙ୍କର ସଖୀମାନେ ରାଜପ୍ରାସାଦକୁ ଫେରିଗଲେ । ସଖୀମାନେ ସେଠାରେ ପହଞ୍ଚି ରାଜାଙ୍କୁ ଏ ଖବର ଦେଲେ ।

ରାଜା ଅତ୍ୟନ୍ତ ଖୁସି ହୋଇ ମହା-ସମାରୋହରେ କୁମାରଙ୍କୁ ଓ ତାଙ୍କ ସଖାମାନଙ୍କୁ ନଗରକୁ ନିମନ୍ତ୍ରଣ କରି ଆଣିଲେ । ଇତି ମଧ୍ୟରେ ନାରଦ ଯାଇ ସବୁକଥା ଶିବପାର୍ବତୀଙ୍କୁ କହିଥା'ନ୍ତି । ଶିବ ପାର୍ବତୀ ଶୁଣି ଖୁବ୍ ଖୁସି ହେଲେ ଓ ଭୀଲ ରାଜାଙ୍କ ନଗରକୁ ଆସିଲେ । ମହା ଆଡ଼ମ୍ବରରେ ବିବାହ ଉତ୍ସବ ସମାପ୍ତ ହେଲା । ଶିବ ପାର୍ବତୀ ପୁଅ ବୋହୂଙ୍କୁ ଧରି କୈଳାସ ପ୍ରତ୍ୟାବର୍ତ୍ତନ କଲେ ।

କିଛିଦିନ ବିତିଗଲା ପରେ ଖବର ମିଳିଲା ଶୋଣିତପୁରରେ ଗଜାସୁର ନାମକ ଏକ ଅସୁର କ୍ରମେ ଶକ୍ତିଶାଳୀ ହେଉଛି । ସେ ମଧ୍ୟ ବ୍ରହ୍ମାଙ୍କୁ ତପସ୍ୟା କରି ବରପ୍ରାପ୍ତ କରିଥାଏ । ସେ ତିନିଲୋକଙ୍କୁ ତା'ର ଅଧୀନରେ ରଖିଥାଏ ।

ଦିନେ ନାରଦ ମୁନି ଗଜାସୁର ପାଖରେ ଯାଇ ପହଞ୍ଚିଲେ । ଗଜାସୁର ନାରଦଙ୍କୁ ଖୁବ୍ ସମ୍ମାନ ଦେଖାଇଲା । ନାରଦ କହିଲେ, "ଗଜାସୁର, ତୁମେ ମହାନ୍ ଇଶ୍ୱର ଭକ୍ତ । ଏବେ ଶିବଙ୍କୁ ପ୍ରାର୍ଥନା କର, ସେ ଯେପରି ସର୍ବଦା ତୁମ ହୃଦୟରେ ନିବାସ କରି ରହିବେ । ତଦ୍ୱାରା ତମର ଆଉ କୌଣସି ବିପଦ ରହିବ ନାହିଁ ।"

ଗଜାସୁର ନାରଦଙ୍କ ପରାମର୍ଶ ଅନୁସାରେ ଶିବଙ୍କର ପୂଜା ଅର୍ଚ୍ଚନା କଲା । ରାତିଦିନ ଶିବ ପଞ୍ଚାକ୍ଷରୀ ମନ୍ତ୍ର ଜପ କରିବାକୁ ଲାଗିଲା । କିଛି ଦିନ ପରେ ଶିବ ପ୍ରତ୍ୟକ୍ଷରେ ହେବାରୁ ଗଜାସୁର ବର ମାଗିଲା, "ପରମେଶ୍ୱର; ଆପଣ ସର୍ବଦା ମୋ ହୃଦୟରେହିଁ କାମ କରି ରହନ୍ତୁ ।" ଶିବ ଗଜାସୁରର ପ୍ରାର୍ଥନା ପୂରଣ କଲେ ଓ ଲିଙ୍ଗ ରୂପରେ ଗଜାସୁରର ହୃଦୟରେ ବାସ କଲେ ।

ଶିବଙ୍କୁ ନିଜ ସ୍ଥାନରେ ନ ଦେଖି ପାର୍ବତୀ ପ୍ରମାଦ ଗଣିଲେ । ସେ ଶିବଙ୍କୁ ଖୋଜି ଆଣିବା ପାଇଁ ରୁଦ୍ରଗଣଙ୍କୁ ପଠାଇଲେ । ପରେ ପାର୍ବତୀ ଜାଣିପାରିଲେ ଯେ ଶିବଲିଙ୍ଗ ରୂପରେ ଭକ୍ତ ଗଜାସୁରର ହୃଦୟରେ ରହିଛନ୍ତି ।



# ଗଣକଙ୍କ ହିସାବ

ଅନେକ ବର୍ଷ ତଳର କଥା । ଭଦ୍ରପୁରରେ ରହୁଥିଲେ ଜଣେ ନାମଜାଦା ଜ୍ୟୋତିଷ । ତାଙ୍କ ନାମ ଯଦୁ ମିଶ୍ର । ଜାତକ ତିଆରି କରିବା, ଜିନିଷପତ୍ର ଚୋରିଗଲେ ତାହା ଠାବ କରିଦେବା ଇତ୍ୟାଦିରେ ସେ ଥିଲେ ସିଦ୍ଧହସ୍ତ ।

ଦିନେ ସେ ସ୍ଥାନାନ୍ତରରୁ ନିଜ ଘରକୁ ଫେରୁଥିଲେ । ବାଟରେ, ଦୁଇପହରିଆ, ସେ ଗୋଟିଏ ମନ୍ଦିର ବାରନ୍ଦାରେ ବିଶ୍ରାମ ନେଉଁ ନେଉଁ ନିଦରେ ଶୋଇ ପଡ଼ିଲେ । ନିଦରୁ ଉଠିବା ବେଳକୁ ତାଙ୍କ ଛତାଟି କିଏ ନେଇ ଯାଇଛି ।

ସେ ପାଖ ଗାଁର ପଞ୍ଚାୟତ ପାଖରେ ନାଲିସ୍ କରି ଛତାଚୋରର ଧରାଇ ଦେବାକୁ କହିଲେ ।

ପଞ୍ଚାୟତର ସଭାପତି ପଚାରିଲେ, "ମିଶ୍ରେ ! ଆପଣ ଗଣନା କରି ଚୋର ଧରୁ ନାହାନ୍ତି କାହିଁକି ?"

"ଆଜ୍ଞା, ଥରେ ଗଣିନା କରିବା ନିମନ୍ତେ ମୁଁ ଦୁଇଟଙ୍କା ନେଇଥାଏଁ । ଛତାର ଦାମ ଏକଟଙ୍କା । ଛତା ପାଇଲେ ବି ତ ସେଥିରେ ମୋର କ୍ଷତି ହେଉଛି !" ମିଶ୍ରେ ହିସାବ ଶୁଣାଇ ଦେଲେ ।





# କୃତଜ୍ଞତାର ବୋଝ

ଚାନ୍ଦପୁର ଗ୍ରାମରେ ଗଗନ ନାମକ ଜଣେ ମଧ୍ୟବୟସ୍କ ବ୍ୟକ୍ତି ଥା'ନ୍ତି । ସେ ଖୁବ୍ ଗରିବ । ଥରେ ଗ୍ରାମର ଅଧିକାରୀ ରମାକାନ୍ତଙ୍କ ପାଖକୁ ସେ କୌଣସି ବିପଦରେ ପଡ଼ି ଯାଇଥିଲେ । ସାଧାରଣତଃ ରମାକାନ୍ତ କାହାକୁ ସାହାଯ୍ୟ କରନ୍ତି ନାହିଁ । କିନ୍ତୁ ସେଦିନ ସେ ଖୁବ୍ ଖୁସି ଥିଲେ । ତେଣୁ ସେ ତାଙ୍କୁ ସାହାଯ୍ୟ କଲେ ।

ଗଗନ ଗରିବ ଥିଲେ ମଧ୍ୟ ରମାକାନ୍ତ ସାହାଯ୍ୟ କରିଥିବାରୁ ତାଙ୍କୁ ସେ କୌଣସି ଭାବରେ କୃତଜ୍ଞତା ଦେଖାଇବାକୁ ଚାହିଁଲେ । ସେ ଅନ୍ୟମାନଙ୍କୁ ମଧ୍ୟ ପଚାରିଲେ କ'ଣ କଲେ ଭଲ ହେବ । ସେମାନେ କହିଲେ, "ଗଗନ, ତୁମର କାମ ଥିଲା ସାଧାରଣ, ସେଥିପାଇଁ ତାଙ୍କୁ କିଛି କଷ୍ଟ କରିବାକୁ ପଡ଼ିନାହିଁ । ତଥାପି ଯଦି ତମେ କୃତଜ୍ଞତା ଦେଖାଇବାକୁ ଚାହୁଁଛ ତେବେ ଶୁଣ, ତମେ ତ ଆଚାର ତିଆରି କରୁଛ । ସେଇଥିରୁ କିଛି ଦେଇଦିଅ । ସେ ଖୁସି ହେବେ ।"

ଗଗନ ଆଚାର ତିଆରି କରିବାରେ ଥିଲେ ସିଦ୍ଧହସ୍ତ । ଆଚାର ବ୍ୟବସାୟୀମାନେ ତାଙ୍କଠାରୁ ଆଚାର ନେଇ ବାହାରେ ବିକନ୍ତି । କଥାଟା ଗଗନଙ୍କୁ ଭଲ ଲାଗିଲା । ସେ କିଛି ଆଚାର ନେଇ ରମାକାନ୍ତଙ୍କୁ ଦେଇ ଆସିଲେ । ରମାକାନ୍ତ ଆଚାର ହାଣ୍ଡିଟି ନେଇ ତାଙ୍କ ମା'ଙ୍କୁ ଦେଇ କହିଲେ, "ମା', ଗଗନକୁ ମୁଁ କିଛି କାମରେ ସାହାଯ୍ୟ କରିଥିଲି । ତେଣୁ ସେ ମୋତେ କୃତଜ୍ଞତା ସ୍ୱରୂପ ଏ ଆଚାର ହାଣ୍ଡିଟି ଦେଇଛି, ମା', ତମେ କହିଥିଲ ଶ୍ରଦ୍ଧାରେ କିଏ କିଛି ଦେଲେ ଫେରାଇ ନ ଦେଇ ଗ୍ରହଣ କରିବା ଉଚିତ୍ । ମୁଁ ଶୁଣିଛି ଗଗନର ଆଚାରର ଖୁବ୍ ସୁନାମ ଅଛି ।

ତମେ ଏ ଆଗୃର ସମସ୍ତଙ୍କୁ ଟିକିଏ ଟିକିଏ ଦେବ ।"

ରମାକାନ୍ତଙ୍କ ମା' ଟିକିଏ ଆଗୃର ଚାଖିଦେଇ କହିଲେ, "ଏମିତିଆ ଅଗୃର ଡିକେହିଁ ମିଳିଥାଏ । ଏହାକୁ ଆମ ଘରେ କେହି ଖାଇବେ ନାହିଁ, ତୁ ହିଁ ଏ ହାଣ୍ଡିଟାଯାକ ଖାଇ ଦେ ।"

ରମାକାନ୍ତ ସ୍ୱଦରେ ଖାଇବା ବେଳେ ଆଗୃର ଟିକିଏ ଚାଖିଲେ । ତାଙ୍କୁ ବହୁତ ଭଲ ଲାଗିଲା । ସେ ସବୁବେଳେ ସେଇ ଆଗୃର ଖାଇ ଖାଇ ଦୁଇତିନି ଦିନରେ ହାଣ୍ଡି ଶେଷ । ଏତେଗୁଡ଼ାଏ ଆଗୃର ଖାଇଦେଲେ ସିନା, ହଜମ କରୁଛନ୍ତି ବା କିପରି! ପେଟ ଖରାପ ହେଲା । ଶେଷକୁ ତାଙ୍କ ମା ବୈଦ୍ୟରାଜଙ୍କୁ ଡ଼ାକିଲେ ।

ବୈଦ୍ୟରାଜ ଆସି ସବୁ ଦେଖି ଓ ଶୁଣି କହିଲେ, "ରମାକାନ୍ତଜୀ, ଆପଣଙ୍କ ପେଟ ପାଇଁ ରଜତ ଭସ୍ମ ଦରକାର । ସେଥିପାଇଁ ଦଶଟଙ୍କା ଲୋଡ଼ା ।" ବାଧ୍ୟ ହୋଇ ରମାକାନ୍ତ ଦଶଟଙ୍କା ବାହାର କରି ଦେଲେ । ଔଷଧ ଖାଇବା ପରେ ଦୁଇ ଦିନରେ ସମ୍ପୂର୍ଣ୍ଣ ଭଲ ହୋଇଗଲେ ।

ରମାକାନ୍ତ ଥିଲେ ଖୁବ୍ କଞ୍ଜୁସ୍ । ସେ ଭାବିଲେ ଯେ ଗରିବଙ୍କୁ ସେ ସାହାଯ୍ୟ କଲେ ଓ ତା' ପରିବର୍ତ୍ତେ ଯାହା ପାଇଲେ ତଦ୍ୱାରା ତାଙ୍କର ଦେହ ଖରାପ ହୋଇ ଏତେଗୁଡ଼ାଏ



ଖର୍ଚ୍ଚ ହେଲା । ତେଣୁ ସେ ମନ ମଧ୍ୟରେ ଗୋଟାଏ ଉପାୟ ପାଞ୍ଚିଲେ । ସେ ବୈଦ୍ୟଙ୍କୁ ଡ଼ାକି କହିଲେ, "ଆପଣ ମୋ ପାଇଁ ଦଶଟଙ୍କା ଖର୍ଚ୍ଚ ବାବଦରେ ନେଲେ ମଧ୍ୟ ଗୃହଆଡ଼େ କହିବେ ଯେ ପଚିଶ ଟଙ୍କା ମୋଠାରୁ ଆପଣ ନେଇଛନ୍ତି । ଆଉ ଦେଖନ୍ତୁ, ଯଦି ଏପରି ନ କରନ୍ତି ତ ଏ ଗ୍ରାମରେ ଆପଣଙ୍କର ରହିବା ମୁସ୍କିଲ୍ ହୋଇଯିବ ।"

ବୈଦ୍ୟ ମହା ଅଡୁଆରେ ପଡ଼ିଲେ । ଏଡ଼େ ନିପଟ ମିଛ ସେ କହିବେ କିପରି ? ଏଣେ ରମାକାନ୍ତଙ୍କୁ ତାଙ୍କର ବହୁତ ଭୟ । ରମାକାନ୍ତ ଠକୁର; ତା' ଉପରେ ତାଙ୍କର ବିବେକ, ଦୟାମାୟା କିଛି ନଥାଏ ବୋଲି ସେ



ଜାଣିଥାନ୍ତି । ତେଣୁ କ'ଣ କରିବେ ବୁଝିପାରୁ ନଥାନ୍ତି ।

"କ'ଣ, ଏତେ ଭାବୁଛନ୍ତି କଣ ? ମୋ କହିବା ଅନୁସାରେ କାମ କରିବେଟି ?" ରମାକାନ୍ତ ଧମକ ଦେଲେ ।

ବିଚାରା ବୈଦ୍ୟ ଡରିଡରି କହିଲେ, "ଆପଣ ଯେପରି ଚାହୁଁଛନ୍ତି ସେପରି ହେବ । ତଦ୍ୱାରା ମୋର ଲାଭ ହେବ । କାରଣ ଅନ୍ୟମାନେ ମୋ ଦ୍ୱାରା ଚିକିତ୍ସିତ ହେଲେ ସେତିକି ପଇସା ଦେବେ ।"

ତା'ପରେ ରମାକାନ୍ତ ଗଗନଙ୍କୁ ଡାକି କହିଲେ, "ଦେଖ ତମେ ଯେଉଁ ଆଚାର ଦେଇଥିଲ ତାକୁ ଖାଇ ମୁଁ ବେମାର ପଡ଼ିଗଲି ଓ ଭଲ ହେବାପାଇଁ ପଚିଶ ଟଙ୍କା ଖର୍ଚ୍ଚ କରିବାକୁ ହେଲା । ସେ ପଚିଶ ଟଙ୍କା ତମେ ଦେବ ।"

"କ'ଣ କହୁଛନ୍ତି ଆଜ୍ଞା ? ମୁଁ ଗରିବ ଲୋକ, ଆଚାର ଟିକିଏ ଦେଇଥିଲି କୃତଜ୍ଞତା ସ୍ୱରୂପ । ଏବେ କାହିଁକି ଆପଣ ମୋତେ ଏ ଦଣ୍ଡ ଦେଉଛନ୍ତି ?" ଗଗନ କହିଲେ ।

"ତମେ ଗରିବ କି ନୁହେଁ ସେଇଟା ମୁଁ ଜାଣିବାକୁ ଚାହେଁନାହିଁ । ମୋର ଦରକାର ଟଙ୍କା ।" ରମାକାନ୍ତ କହିଲେ ।

ଗଗନ ସବୁ ଶୁଣି ଚୁପ୍‌ଚାପ୍ ସେଠାରୁ ଉଠି ଚାଲିଗଲେ । ସେ ବୈଦ୍ୟଙ୍କ ପାଖରେ ପହଞ୍ଚି କହିଲେ, "ବୈଦ୍ୟଜୀ, ମୁଁ ଯଦି ଦଣ୍ଡ ଭୋଗିବି, ତେବେ ଅପରାଧ କରି ଦଣ୍ଡ ନ ଭୋଗିବି କାହିଁକି ? ଆଉ ସେ ଅପରାଧଟି କ'ଣ ଜାଣନ୍ତି ? ଆପଣଙ୍କୁ ଚୁଡ଼ାଏ ପିଟିବି ।"

"କିନ୍ତୁ ମୋତେ କାହିଁକି ବାଡ଼େଇବ ? ମୁଁ ତୁମର କ'ଣ କଲି ?" ଡରି ଯାଇ ବୈଦ୍ୟଜୀ ପଚାରିଲେ ।

"ଦେଖ, ତୁମେ ଏତେ ଟିକିଏ ଔଷଧ ଦେଇ ପଚିଶ ଟଙ୍କା ନେଇଛ । ଆଉ ରମାକାନ୍ତ ମୋତେ ମାରୁଛନ୍ତି । ଅଳ୍ପ ପଇସା ହେଲେ ବା କୁଆଡ଼ୁ ଆଣି ଦିଅନ୍ତି । ଏତେ ଟଙ୍କା ଅନ୍ୟାୟ ଭାବରେ ମୋଠାରୁ ସେ ନେଇଯିବେ ଆଉ ମୁଁ କିଛି କହିବି ନାହିଁ ?" ଗଗନ କହିଲେ ଓ ବୈଦ୍ୟଙ୍କୁ ସମଗ୍ର ଘଟଣାଟି ବୁଝାଇ ଦେଲେ ।



"ଓ ଏମିତ କଥା ? ଆଚ୍ଛା ଆମେ ସମସ୍ତେ ମିଶି ତାଙ୍କୁ ଗୋଟିଏ ଏଭଳି ଶିକ୍ଷା ଦେବା ଯେ ସେ ଜୀବନରେ ଆଉ ବଦମାସି କରିବାକୁ ସାହସ କରିବେ ନାହିଁ ।" ବୈଦ୍ୟ କହିଲେ । ତା'ପରେ ବୈଦ୍ୟ କିଛି ସମୟ ବସି କିଛି ଉପାୟ ଚିନ୍ତା କଲେ ଓ ଗଗନଙ୍କୁ କ'ଣ କରିବାକୁ ହେବ କହିଲେ ।

ବୈଦ୍ୟଙ୍କ କଥା ଶୁଣି ଗଗନ ତାଙ୍କ ପାଦରେ ପଡ଼ିଯାଇ କହିଲେ, "ଆପଣ ତ ଜଣେ ମହାନ୍ ବ୍ୟକ୍ତି । ମୁଁ ଖାଲିରେ ଆପଣଙ୍କୁ ବାଡ଼େଇବାକୁ ଦୌଡ଼ିଥିଲି !"

ତା'ପରେ ଗଗନ ଗ୍ରାମରୁ କେତେକ ମୁଖ୍ୟ ବ୍ୟକ୍ତିଙ୍କୁ ଓ ବୈଦ୍ୟଙ୍କୁ ନେଇ ରମାକାନ୍ତଙ୍କ ଘରକୁ ଗଲେ । ସେଠାରେ ସମସ୍ତିଙ୍କ ଉପସ୍ଥିତିରେ ସବୁ ଘଟଣା କହିସାରିବା ପରେ ଗଗନ କହିଲେ, "ମୋ ପରି ଗରିବ ଲୋକଙ୍କୁ ଏପରି ଦଣ୍ଡଦେବା କ'ଣ ଉଚିତ୍ ?"

ମୁଖିଆ ରମାକାନ୍ତ କହିଲେ, "ଉଚିତ୍ ବୋଲି ତ ଲୁହାଗଲା । ମୁଁ ଗ୍ରାମର ମୁଖିଆ । ନ୍ୟାୟ କଥା କହିବି । ଦୟାରେ ତରଳି ଗଲେ ତ ଚଳିବ ନାହିଁ !"

ରମାକାନ୍ତଙ୍କ କଥା ଶୁଣିବା ମାତ୍ରେ ଗଗନ ମୁଣ୍ଡ ଘୁରାଇ ସେଠାରେ ମୂର୍ଚ୍ଛା ହୋଇ ପଡ଼ିଗଲେ । ସମସ୍ତେ ଏକ ସ୍ୱରରେ କହି ଉଠିଲେ, "ଗଗନର ହେଲା କ'ଣ ?"

ବୈଦ୍ୟଜୀ ତତ୍‌କ୍ଷଣାତ୍ ଗଗନଙ୍କର ନାଡ଼ୀ ଚିପି କହିଲେ, "ରକ୍ତଗୃପ ବେମାରି । ହଠାତ୍ ଅସହନୀୟ ଦୁଃଖ ହେଲେ ବା ମନରେ ଦାରୁଣ ଆଘାତ ପ୍ରାପ୍ତ ହେଲେ ଏପରି ହୁଏ । କିନ୍ତୁ ଏ ରୋଗ ପାଇଁ ଶହେ ଟଙ୍କାର ସ୍ୱର୍ଣ୍ଣ ଭସ୍ମ ଦରକାର । କ'ଣ କରାଯିବ ? କିଏ ଏ ଖର୍ଚ୍ଚ ଦେବ ?"

ବୈଦ୍ୟଙ୍କ କଥା ଶୁଣି ଗ୍ରାମବାସୀମାନେ କହିଲେ, "ଏପରି ଅବସ୍ଥାରେ ଯାହା ହେବା କଥା ଆଗରୁ ତ ମୁଖିଆ କହିଛନ୍ତି । ଗଗନର ଆଗ୍ରହରୁ ତାଙ୍କ ପେଟ ବ୍ୟଥା ହେବାରୁ ଗଗନ ଯେପରି ପଚିଶ ଟଙ୍କା ଦେବ; ଏବେ ରମାକାନ୍ତଙ୍କ କଥା ଯୋଗୁ ଗଗନର ରକ୍ତଗୃପ

ହୋଇଛି । ତେଣୁ ତା'ର ଖର୍ଚ୍ଚ ସେ ହିଁ ତୁଲାଇବେ ।"

ରମାକାନ୍ତ ଏକଥା ଶୁଣି ଚମକି ପଡିଲେ ଓ ଜାଣିପାରିଲେ ଏସବୁ ଗଗନର ଫନ୍ଦି । ତା'ପରେ ସେ ବୈଦ୍ୟଙ୍କୁ ଚାହିଁ କହିଲେ, "ଏଇ ରୋଗ ପାଇଁ ଶହେ ଟଙ୍କା, ଅସମ୍ଭବ ।"

ବୈଦ୍ୟଜୀ ବିନୟପୂର୍ବକ ନିବେଦନ କରି କହିଲେ, "ଆପଣଙ୍କ ପେଟ ଯନ୍ତ୍ରଣା ପାଇଁ ମୁଁ ପଚିଶ ଟଙ୍କା ନେଇଥିଲି । ସେ ରୋଗ ତ ସଙ୍ଗେ ସଙ୍ଗେ ଭଲ ହୋଇଯାଏ । କିନ୍ତୁ ଏ ରକ୍ତଗୃପ ବେମାରି ତ ସାରା ଜୀବନ ରହିଥାଏ । ଏପରି ଜଟିଳ ବେମାରି ପାଇଁ ମୁଁ ଶହେଟଙ୍କା ମାଗିଲି ତ କ'ଣ ହେଲା ? ଆଉ ଗଗନ ମଧ୍ୟ ଗରିବ, ଏତେ ଖର୍ଚ୍ଚ ଦେଇପାରିବ ନାହିଁ ।"

ରମାକାନ୍ତ ମହା ଅଡୁଆରେ ପଡ଼ିଲେ । ଇତିମଧ୍ୟରେ ଗଗନ ଉଠିପଡି କହିଲେ, "ଓଃ ମୋର କ'ଣ ଏମିତି ହୋଇଗଲା ?"

ବୈଦ୍ୟ ତାଙ୍କ କାନ ପାଖକୁ ମୁହଁ ନେଇ କହିଲେ, "ତୁମର ରକ୍ତଗୃପ ହୋଇଛି । ଶହେଟଙ୍କା ଖର୍ଚ୍ଚ ଲାଗିବ । ମୁଖିଆଙ୍କୁ ତମେ ପଚିଶ ଟଙ୍କା ଦେବା କଥା । ଏବେ ସେ ତମକୁ ଶହେ ଟଙ୍କା ଦେବେ ।"

ବୈଦ୍ୟଙ୍କ ମୁହଁରୁ ସାରା ବୃତ୍ତାନ୍ତ ଶୁଣି ଗଗନ ଉଠି ଠିଆ ହେଲେ । ତା'ପରେ ରମାକାନ୍ତଙ୍କୁ କହିଲେ, "ମୁଖିଆବାବୁ, ଆପଣ ତ ବଡ଼ ଧର୍ମାତ୍ମା । ମୁଁ ମରିବା ପାଇଁ ପ୍ରସ୍ତୁତ । ଆପଣଙ୍କଠାରୁ କୌଣସି ପଇସା ନେବି ନାହିଁ । ମୁଁ ଠକେଇ କରିବାକୁ ଚାହୁଁନାହିଁ ।" ଏତିକି କହି ସେ ସେଠାରୁ ଚାଲିଗଲେ ।

"ହଉ, ଛାଡ଼ । ଯଦି ଗଗନ ରମାକାନ୍ତଙ୍କୁ ଛାଡ଼ିଦେଲା, ଆମର ଆଉ କ'ଣ କହିବାର ଅଛି ?" ଏହା କହି ଗ୍ରାମବାସୀମାନେ ଗଗନକୁ ପ୍ରଶଂସା କରି ସେଠାରୁ ଚାଲିଗଲେ । ବୈଦ୍ୟ ମଧ୍ୟ ରମାକାନ୍ତଙ୍କୁ ତାଙ୍କ ପେଟ କିପରି ଅଛି ପଚାରିଦେଇ ବିଦାୟ ନେଲେ ।



ପଶୁ-ପକ୍ଷୀ:

# ନାର୍ବେ ଲେମିଙ୍ଗ୍‌ସ

ଲେମିଙ୍ଗସ୍ ନାମକ ଏକ ଉଦ୍ଭଟ ପଶୁ ଅଛନ୍ତି । ସେମାନେ ତିନି ଚାରିବର୍ଷରେ ଥରେ ପାହାଡ଼ ବା ଉଚ୍ଚଭୂମିରୁ ବାହାରି ଦଳ ଦଳ ହୋଇ ସମୁଦ୍ର ଆଡ଼କୁ ଦୌଡ଼ନ୍ତି, ତା'ପରେ ସମୁଦ୍ର ପାଖରେ ପହଞ୍ଚି ସମୁଦ୍ର ଭିତରକୁ ଲମ୍ଫ ଦିଅନ୍ତି । କୌଣସି ବୈଜ୍ଞାନିକ ନିଶ୍ଚିତ ଭାବରେ କହିପାରି ନାହାନ୍ତି ଯେ ଏପରି ଉଦ୍ଭଟ ବ୍ୟବହାର ସେମାନେ କାହିଁକି କରନ୍ତି ।

ଲେମିଙ୍ଗସମାନେ ବର୍ଷରେ ଦଶବାରଟି ପିଲା ପ୍ରସବ କରନ୍ତି । ଦୁଇ ତିନିବର୍ଷ ମଧ୍ୟରେ ସେମାନଙ୍କ ସଂଖ୍ୟା ଅତ୍ୟଧିକ ବୃଦ୍ଧି ପାଏ । ତେଣୁ ପର୍ବତ ବା ଉଚ୍ଚ ଭୂମିରେ ଯଥେଷ୍ଟ ଖାଦ୍ୟ ନ ପାଇବାରୁ ସେମାନେ ସମୁଦ୍ର ଯାତ୍ରା କରନ୍ତି । ସମୁଦ୍ରରେ ଲମ୍ଫ ଦେବା ପରେ ପ୍ରାୟ ସମସ୍ତେ ମରିଯା'ନ୍ତି । ସେମାନଙ୍କ ସଂଖ୍ୟା ବୃଦ୍ଧି ସହିତ ଖାଦ୍ୟର ପରିମାଣକୁ ପର୍ଯ୍ୟାପ୍ତ ରଖିବା ପାଇଁ ବୋଧହୁଏ ପ୍ରକୃତି ଏପରି ଉଦ୍ଭଟ ବ୍ୟବସ୍ଥା କରିଛି ବୋଲି କେତେକ ମତ ଦିଅନ୍ତି । ସମୁଦ୍ର ଯାତ୍ରା ସମୟରେ ଶିକାରୀ ପକ୍ଷୀମାନେ ରାସ୍ତାରେ ସେମାନଙ୍କୁ ଅନେକ ସଂଖ୍ୟାରେ ମାରି ପକାନ୍ତି । ଯାହା ବଳକା ଥା'ନ୍ତି ପୁଣି ସମୁଦ୍ରରେ ମରନ୍ତି ।

ସେମାନଙ୍କ ମୁହଁ ଠେକୁଆ ପରି ମୁଣ୍ଡ ଗୋଲ ଓ ମୁହଁ ଗୋଜିଆ । ପାଦଟିମାନ ଅତ୍ୟନ୍ତ ଛୋଟ । ନାର୍ବେ ପର୍ବତ ପାଖରେ ଅସଂଖ୍ୟ ଲେମିଙ୍ଗ୍‌ସ ଥା'ନ୍ତି । ସେଥିପାଇଁ ସେମାନଙ୍କର ନାମ ହୋଇଛି ନାର୍ବେ ଲେମିଙ୍ଗ୍‌ସ ସେମାନଙ୍କ ଜୀବନ ସର୍ବଦା ବିପଦସଙ୍କୁଳ, ପୂର୍ବ ଇଉରୋପ, ଏସିଆ ଓ ଆମେରିକାରେ ମଧ୍ୟ ସେମାନେ ଦେଖାଯା'ନ୍ତି । ଗ୍ରୀଷ୍ମକାଳରେ ସୁଡଙ୍ଗ ତିଆରି କରି ସେମାନେ ଶୀତକାଳ ପାଇଁ ଆହାର ସଞ୍ଚୟ କରନ୍ତି । ଏପରି ସୁଡଙ୍ଗ କରିବାରେ ସେମାନଙ୍କ ନଖ ସାହାଯ୍ୟ କରେ । ଶୀତ କାଳରେ ସେମାନେ ବରଫ ତଳେ ଗାତ ଭିତରେ ବାସ କରନ୍ତି ।



# NEW!

# POWER PACKED SURF

ନୂଆ ପାଓ୍ବାର ପ୍ୟାକ୍‌ଡ ସର୍ଫ ।

କଣ-କଣରେ ଭରିଛି ଶକ୍ତି'ର ଭଣ୍ଡାର, ଆଗ ଅପେକ୍ଷା ଅଧିକ ଶକ୍ତିଶାଳୀ ଫର୍ମୁଲାରେ ତିଆର : ଧଳା ଲୁଗାପଟାରେ ଆଣେ ସବୁଠୁ ଉଜ୍ଜ୍ୱଳତା ।

ହେଲେ କନାକୁ ସୁରକ୍ଷିତ ରଖେ ନୂଆପଣିଆ ଟିକେଇ ରଖିବା ପାଇଁ : ପ୍ରତିଟି ଜାମା, ପ୍ରତିଟି ଧୋତି, ଖଦର ରହେ ସଜ, ସତେଜ ଆଉ ଶ୍ୱେତଶୁଭ୍ର— ଠିକ ନୂଆ ଭଳି । ଥରକୁ ଥର ସଫା କଲା ପରେ ବି ।

ଆହୁରି ପୁଣି—ନୂଆ ପାଓ୍ବାର ପ୍ୟାକ୍‌ଡ ସର୍ଫ ସଦା ସତେଜ ସୁଗନ୍ଧରେ ସୁରଭିତ ହୋଇ ସୁଦୃଶ୍ୟ ନୂଆ ପ୍ୟାକ୍‌ରେ ମିଳୁଛି ।

ତାହେଲେ ଆଜି ହିଁ ନେଇ ଆସନ୍ତୁ ନୂଆ ପାଓ୍ବାର ପ୍ୟାକ୍‌ଡ ସର୍ଫ ।




**ସବୁଠୁ ଶୁଭ୍ର ସର୍ଫ'ର ଧୁଲେଇ, ଜାମାପଟା ସଦା ନୂଆ ଦିଶଇ!**

LINTAS SU 325 2117 RY

ହିନ୍ଦୁସ୍ତାନ ଲିଭରଙ୍କ ଏକ ଉତ୍କୃଷ୍ଟ ଉତ୍ପାଦନ ।

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଡିସେମ୍ବର ୧୯୮୫ ସଂଖ୍ୟାରେ ପ୍ରକାଶ ପାଇବ



S. B. Prasad



Madhavi Sanara

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଅକ୍ଟୋବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ।
★ ପରିଚୟୋକ୍ତି ସହ ପ୍ରେରକଙ୍କର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

## ଅଗଷ୍ଟ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ପାଠ ପଢ଼ି ପଢ଼ି ବାବୁଲ ଆମର ମଧୁବାବୁ ପରି ହୋଇବ !

ଦ୍ବିତୀୟ ଚିତ୍ର : ଶୋଇଯାଇ ଝୁନା ଦେଖୁଛି ସପନ ମଧୁବାବୁ ସଙ୍ଗେ ଲଢ଼ିବ !!

ପୁରସ୍କାର ବିଜୟୀ : ମଧୁସୂଦନ ସାହୁ, ଖୁଣ୍ଟାପାଳ, ମୟୂରଭଞ୍ଜ

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

## ପ୍ରଶ୍ନମାଳାର ଉତ୍ତର

୧. ଏକଦା ଭୁବନେଶ୍ବରରେ ସାତହଜାର ମନ୍ଦିର ଥିଲା ବୋଲି କୁହାଯାଏ। ଅଧୁନା ଛୋଟବଡ଼, ପରିତ୍ୟକ୍ତ ତଥା ପ୍ରଚଳିତ ପ୍ରାୟ ପାଞ୍ଚଶହ ମନ୍ଦିର ରହିଛି। ୨. କୋଣାର୍କ। ୩. କଟକ ଜିଲ୍ଲାର ରହିଗିରିଠାରେ। ୪. କଟକର କଦମରସୁଲଠାରେ। ୫. ଓଡ଼ିଶାରେ। ଚିଲିକା।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.



# ପାଠକମାନଙ୍କୁ ନିବେଦନ

କାଗଜର ମୂଲ୍ୟ ତଥା ମୁଦ୍ରଣ ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚ ଦ୍ରୁତ ଗତିରେ ବଢ଼ିବା ସତ୍ତ୍ୱେ ଆମେ 'ଜହ୍ନମାମୁଁ'ର ମୂଲ୍ୟ ବୃଦ୍ଧି କରିବାକୁ କୁଣ୍ଠା ବୋଧ କରି ଆସିଛୁଁ । ଯେତେଦିନ ସମ୍ଭବ, ଦୁଇଟଙ୍କା ମୂଲ୍ୟରେହିଁ ଏହି ରଙ୍ଗୀନ ସଚିତ୍ର ମାସିକ ଯୋଗାଇ ଆସିଛୁଁ । କିନ୍ତୁ ଆଉ ସମ୍ଭବ ହେଉ ନାହିଁ । ନଭେମ୍ବର ମାସରୁ ପତ୍ରିକାର ମୂଲ୍ୟ ପଚାଶ ପଇସା ବଢ଼ାଇବାକୁ ଆମେ ବାଧ୍ୟ ହେଉଛୁଁ । ପ୍ରତି ସଂଖ୍ୟାର ମୂଲ୍ୟ ହେବ ଟ. ୨-୫୦ ଏବଂ ବାର୍ଷିକ ମୂଲ୍ୟ ହେବ ଟ. ୩୦-୦୦ ।

ଆଶା ଓ ବିଶ୍ୱାସ, ଆମର ସହୃଦୟ ଗ୍ରାହକ ଓ ପାଠକ ପାଠିକାମାନେ ଅବସ୍ଥା ହୃଦୟଙ୍ଗମ କରିବେ ଏବଂ ଏ ଅନିଚ୍ଛାକୃତ ପରିବର୍ତ୍ତନକୁ ଗ୍ରହଣ କରି 'ଜହ୍ନମାମୁଁ'କୁ ନିଜର କରି ରଖିବେ ।

—ପ୍ରକାଶକ

# ନୂଆ ସକାଳ ହେଲା, ନୂଆ ଖରା ପଡ଼ିଲା

## ନୂଆ ସନଲାଇଟ୍

### ଡିଟର୍ଜେଣ୍ଟ ପାଉଡର

**ଆପଣଙ୍କ ଲୁଗାପଟାରେ ଖରା'ର ଆଭା ଉକୁଟାଏ !**

ଆପଣ ବି ଭଲ ପଇରୁ ନେଇ ଆସନ୍ତୁ ସନଲାଇଟ୍'ର ଝଲମଲ ଆଭା । ନୂଆ ସନଲାଇଟ୍ ଡିଟର୍ଜେଣ୍ଟ ପାଉଡର — ଓଜନରେ ଏକଦମ ହାଲୁକା, ଅଥଚ ପ୍ରଭାବ ତା'ର ଅନେକ ଅଧିକା । ଯେଉଁ ଦାମିକା ପାଉଡରମାନଙ୍କ ପରି କାମିକା, ହେଲେ ଦାମ ମନେ ହୁଏ ଅନେକ କମ !

ସନଲାଇଟ୍‌ରେ ଅଛି ଏକ ପଦାର୍ଥ ବିଶେଷ, ଯାହା ସାଧାରଣ ପାଉଡରଗୁଡ଼ିକରେ ନ ଥାଏ ଲବଲେଶ, ଏହା ଲୁଗାପଟାର ତନ୍ତୁ ତନ୍ତୁରୁ ମଇଳା କାଢ଼ି ବାହାର କରେ, ଅସଲ ଆଭା ଉକୁଟାଏ ସେ ସବୁରେ ।

ସନଲାଇଟ୍‌ରେ ନା ହାତକୁ କଷ୍ଟ, ନା ହୁଏ ଲୁଗାପଟାର ଅନିଷ୍ଟ । ଆଉ ଏହାର ସତେଜ ମୃଦୁ ମନ ମୁଗ୍ଧ, ଆପଣଙ୍କ ଲୁଗାପଟାରେ ରହେ ବହୁକ୍ଷଣ ପୂରନ୍ତା ।

ତେବେ ଆସନ୍ତୁ, ଆପଣ ବି ସନଲାଇଟ୍'ର ଝଲମଲ ଆଭା ଘର ଜୀବନରେ ଉକୁଟାନ୍ତୁ । ଥରଟିଏ ବ୍ୟବହାର କରନ୍ତୁ ଅବଶ୍ୟ— ଦାମ ଅନେକ କମ !

**ସୂର୍ଯ୍ୟପ୍ରଭା ସମ ଝଲମଲ କରେ ପୋଷାକ ତବ ।**




ହିନ୍ଦୁସ୍ତାନ ଲିଭରଙ୍କ ଏକ ଉତ୍କୃଷ୍ଟ ଉତ୍ପାଦନ ।

OBM/2568/R/ORI

# ଏକ୍କାଦମ ପ୍ରଥମ ଥର!

# ହକିନ୍ସ®

## ଅନନ୍ୟ ତିନି ଉପହାର

### ୧. ବଦଳାନ୍ତୁ ନିଜ ପୁରୁଣା କୁକର

ଯେ କୌଣସି ମାର୍କାର ହେଉ ପଛେ, ତାକୁ ବଦଳେଇ ନିଅନ୍ତୁ ଏକବାରେ ନୂଆ ହକିନ୍ସ ପ୍ରଚଳିତ ବଜାର ଦାମରେ ଏବଂ ଟ ୧୦୦/- ପର୍ଯ୍ୟନ୍ତ ନଗଦ ରିହାତି ପାଆନ୍ତୁ (ଉଦା. ସ୍ୱରୂପ: ପୁରୁଣା ୫ ଲିଟରିଟିଏ ବଦଳେଇଲେ ପାଇବେ ଟ ୩୦/- ରିହାତି)।

### ୨. ଟ ୯୦/- ପ୍ରାଥମିକ ଦେୟରୁ

ନଗଦ ରିହାତି କମେଇ ଦିଆଯିବ, ବଳକା ରାଶି ୬ ମାସିକ କିସ୍ତିରେ ଦେବେ, ଯେବେ ଆପଣ ହକିନ୍ସଟିଏ ହାୟର-ପର୍ଚ୍ଚେଜରେ କିଣିବେ। ଅଥବା, ଅନ୍ୟୂନ ୬% ନଗଦ ରିହାତି ତଥା ଆପଣଙ୍କ ପୁରୁଣା କୁକର ଲାଗି ମିଳୁଥିବା ରିହାତି ପାଇବେ।

### ୩. ଆପଣ ଜିତି ପାରନ୍ତି ଟ ୫୦,୦୦୦/-

ତଥା ଅନ୍ୟ ୧୧୬୬ ଟି ପୁରସ୍କାର ମଧ୍ୟରୁ କିଛି ଜିତି ପାରନ୍ତି। ସାଏମୋଟ ପୁରସ୍କାର ୨ ଲକ୍ଷ ଟଙ୍କାରୁ ବି ବେଶି। ହକିନ୍ସଟିଏ କିଣିବା ବେଳେ, ହକିନ୍ସ ସର୍ବୋତ୍ତମ ପ୍ରେସର କୁକର ପ୍ରତିଯୋଗିତାରେ ଭାଗ ନିଅନ୍ତୁ। ପ୍ରବେଶ ପତ୍ରରେ ଦିଆଯାଇଥିବା ପ୍ରେସର କୁକର ସମ୍ବନ୍ଧୀୟ ୧୦ ଟି ଗୁଣକୁ ତାଙ୍କର ପ୍ରମୁଖତା ଅନୁଯାୟୀ କ୍ରମ-ସଂଖ୍ୟା ଦିଅନ୍ତୁ।

କମ୍ପ୍ୟୁଟର ସହାୟତାରେ ନିଷ୍ପକ୍ଷ ନିର୍ଣ୍ଣୟ ନିଆହେବ।

**ହକିନ୍ସ ସର୍ବାଧିକ ସୁରକ୍ଷିତ, ସବୁଠୁ ଶୀଘ୍ର ରାନ୍ଧିଦିଏ ସ୍ୱାଦିଷ୍ଟ ଖାଦ୍ୟ।**

୩୧ ଅକ୍ଟୋବର ୧୯୮୫ ପୂର୍ବରୁ କିଣନ୍ତୁ ଏବଂ ଆପଣଙ୍କ ନିକଟସ୍ଥ ସି ଏସ ଡି (ଆଇ) ୟୁନିଟ କ୍ୟାଣ୍ଟିନ ବା ହକିନ୍ସ ତିନି ଉପହାର ଯୋଜନାର ବିକ୍ରେତାମାନଙ୍କ ଠାରୁ ଗୋଟିଏ, ଦୁଇଟି ବା ତିନୋଟିଯାକ ଉପହାରରୁ ଲାଭାନ୍ୱିତ ହୁଅନ୍ତୁ। ସବିଶେଷ ବିବରଣୀ ଅଥବା ଆପଣଙ୍କ ନିକଟସ୍ଥ ବିକ୍ରେତାବୃନ୍ଦଙ୍କ ଠିକଣା ଜାଣିବା ପାଇଁ ଲେଖନ୍ତୁ: ହକିନ୍ସ ଡିପାର୍ଟମେଣ୍ଟ ୩୫୫, ପୋ. ଅ. ବାକ୍ସ ନଂ. ୬୪୮୧, ବମ୍ବେ-୪୦୦ ୦୧୬।

